ଓଡ଼ିଶା ଶିକ୍ଷାବିଭାଗର ଡିରେକ୍ଟରଙ୍କଦ୍ୱାରା ମଞ୍ଜୁରୀପ୍ରାପ୍ତ

# ଆମ ଭାଇ ଭଉଣୀ

## [ ଅତିରିକ୍ତ ସାହିତ୍ୟ ]

( ପଞ୍ଚମ ଶ୍ରେଣୀ ନିମନ୍ତେ )

ଲେଖକ

ଶ୍ରୀ କୃଷ୍ଣଚନ୍ଦ୍ର ଜେନା

ପ୍ରଥମ ପ୍ରକାଶ
୧୯୭୧

ପ୍ରକାଶକ

ଆଲୋକ ସାହିତ୍ୟ ପ୍ରତିଷ୍ଠାନ

କଟକ

ମୂଲ୍ୟ ଏକ ଟଙ୍କା ମାତ୍ର

# ସୂଚୀ

ବିଷୟ | | ପୃଷ୍ଠା
--- | --- | ---





# ଆମର ମାଆର ସନ୍ତାନ

ଆମର ମାଟିମାଆ ଏଇ 'ପୃଥିବୀ ଯେ କେତେ ପୁରୁଣା, ଆଉ ତାର ବୟସ ଯେ କେତେ ବେଶୀ, ତାହା କେହି ଠିକ୍ କରି କହିପାରିବ ନାହିଁ । ଏ ବିଷୟରେ ନାନା ମୁନିଙ୍କର ନାନା ମତ । ସେ ଯାହାହେଉ, ଏକଥା ଠିକ୍ ଯେ, ପୃଥିବୀର ସୃଷ୍ଟି ହେବାବେଳେ ଏଥିରେ କୌଣସି ଗୁଳ୍ମ, ବୃକ୍ଷଲତା, କୀଟପତଙ୍ଗ ବା ପ୍ରାଣୀ ଆଦୌ ନ ଥିଲେ । ମୋଟ ଉପରେ କହିବାକୁ ଗଲେ ପୃଥିବୀ ଥିଲା ଗୋଟିଏ କେବଳ ପ୍ରକାଣ୍ଡ ମାଟିପିଣ୍ଡ ।

ହଜାର ହଜାର ବର୍ଷ ଏହିପରି ଅତୀତ ହେଲା ପରେ ପୃଥିବୀରେ ଗୁଳ୍ମଲତା, ଶିଉଳି, ଜୀବଜନ୍ତୁ ଜନ୍ମଲାଭ କଲେ । ମନୁଷ୍ୟର ଜନ୍ମ ସବୁରି ପଛରେ ହେଲା । ସେହି ଆଦି ମନୁଷ୍ୟ-ମାନଙ୍କର ଆକାର ପ୍ରକାର ଆଜିର ମନୁଷ୍ୟମାନଙ୍କଠାରୁ ପୂରା ଅଲଗା ଥିଲା ।

କ୍ରମେ ମନୁଷ୍ୟମାନଙ୍କ ଦେହରେ ପରିବର୍ତ୍ତନ ଘଟିଲା । ସେମାନେ କେତେ କାଳ ପରେ ଆଧୁନିକ ମାନବର ରୂପ ଓ ଅବୟବ ପାଇ ପୃଥିବୀର ପ୍ରଥମ ସନ୍ତାନ ହେଲେ । ସେହିମାନେ ହିଁ ପୃଥିବୀର ଆଦିମ ଅଧିବାସୀ । ସେହିମାନେ ହିଁ ମନୁଷ୍ୟସମାଜର ପ୍ରଥମ ପୁରୁଷ ।

ଆଜିର ମନୁଷ୍ୟସମାଜ ଅତି ସଭ୍ୟ, ବିଜ୍ଞାନବଳରେ ଅତି ବଳୀୟାନ୍; କିନ୍ତୁ ଆଦିମ ମନୁଷ୍ୟମାନଙ୍କର ଅବସ୍ଥା ତାହା ନ ଥିଲା । ସେମାନେ ବାରବୁଲାରୂପେ ଜୀବନ କଟାଉଥିଲେ ଏବଂ

ଫଳମୂଳ ଆହାର କରିବା ସଙ୍ଗେ ସଙ୍ଗେ ତୀର, ଧନୁ ସାହାଯ୍ୟରେ ବନ୍ୟଜନ୍ତୁ ଶିକାର କରି ସେମାନଙ୍କର ମାଂସ ମଧ୍ୟ ଖାଉଥିଲେ । କେତେ କାଳ ପରେ ଘର ତିଆରିକରି ସମାଜ ଗଢ଼ିବାର କଳ୍ପନା ସେମାନଙ୍କ ମୁଣ୍ଡକୁ ଆସିଲା । ସତରୁ ସତ ସେମାନେ ହେଲେ ଗୃହସ୍ଥ । ପଶୁପାଳନ, କୃଷିବାସ ସେମାନଙ୍କର ହେଲା ପ୍ରଧାନ ଜୀବିକା । କ୍ରମେ ସେମାନଙ୍କର ମତି ଧର୍ମଆଡ଼କୁ ଗଲା । ନାନା ଦେବଦେବୀଙ୍କୁ ସେମାନେ ପୂଜା ଉପାସନା କଲେ ।

ଏହାହିଁ ହେଲା ପୃଥିବୀର ଆଦିମ ଅଧିବାସୀମାନଙ୍କର ମୋଟାମୋଟି ଇତିହାସ । ଆମ ଜନ୍ମଭୂମି ଭାରତବର୍ଷର ଅତୀତ ଇତିହାସ ମଧ୍ୟ ଠିକ୍ ଏହିପରି । ଆର୍ଯ୍ୟମାନେ ଏ ଦେଶକୁ ଆସିବା ପୂର୍ବରୁ ଯେଉଁ ଆଦି ବାସିନ୍ଦାମାନେ ଏଠାରେ ଥିଲେ, ସେମାନଙ୍କୁ ଆଗେ 'ଅନାର୍ଯ୍ୟ' ବୋଲି କୁହାଯାଉଥିଲା; ମାତ୍ର ସେହିମାନେ ହିଁ ଆଜି 'ଆଦିବାସୀ' ନାମରେ ପରିଚିତ ହେଉଛନ୍ତି । ସେମାନଙ୍କର ମଧ୍ୟ ଆଜିକାଲିକାର ସଭ୍ୟ ମନୁଷ୍ୟସମାଜ ପରି ନାନା ଜାତି, ଉପଜାତି ଥିଲା । ସେହି ଆଦିବାସୀମାନଙ୍କର ବଂଶଧରମାନେ ଭାରତର ବିଭିନ୍ନ ବଣ ପାହାଡ଼ରେ ଏବେ ସୁଦ୍ଧା ଘରଦ୍ୱାର କରି ରହିଛନ୍ତି ।

ବଡ଼ ଦୁଃଖର କଥା, ଆମେ ଏତେ ଯୁଗ ହେଲା ସେମାନଙ୍କ ସହିତ କୌଣସି ସମ୍ପର୍କ ରଖୁ ନ ଥିଲୁଁ । ସେମାନେ ଆମର ଅତି ପାଖରେ ଥିଲେ ମଧ୍ୟ ସେମାନଙ୍କ ବିଷୟ ଜାଣିବାକୁ ତିଳେ ହେଲେ ଆଗ୍ରହ ପ୍ରକାଶ କରୁ ନ ଥିଲୁଁ । ପ୍ରକୃତରେ ସେହିମାନେ ଆମ ଜନ୍ମଭୂମି ଭାରତବର୍ଷର ପ୍ରଥମ ସନ୍ତାନମାନଙ୍କର ବଂଶଧର । ସମଗ୍ର ଭାରତରେ ଆଦିବାସୀଙ୍କ ସଂଖ୍ୟା ଅଢ଼େଇ କୋଟିରୁ କିଛି ବେଶୀ । ଏକା ଆମର ଓଡ଼ିଶାରେ ସେମାନଙ୍କ ସଂଖ୍ୟା ତିରିଶ ଲକ୍ଷରୁ ଅଧିକ । ଆମେ ଏପର୍ଯ୍ୟନ୍ତ ସେମାନଙ୍କ ଆଚାରବ୍ୟବହାର, ରୀତିନୀତି,

ଗୃହଚଳନ, ଚଳଣିବାଣି, ଜୀବନଯାତ୍ରା ପ୍ରଣାଳୀ, ଏସବୁ ବିଷୟରେ କୌଣସି ସନ୍ଧାନ କରୁ ନ ଥିଲୁଁ ।

ଏବେ ଆମର ଆଖି ଖୋଲିଯାଇଛି । ଆଦିବାସୀମାନଙ୍କ ସମ୍ବନ୍ଧରେ ଅଧିକରୁ ଅଧିକ ଜାଣିବାପାଇଁ ସବୁରି ମନରେ କୌତୂହଳ ଜାଗିଛି । ସେମାନେ ଆଜି ଆମରି ପରି ନୁହନ୍ତି—ଆମରି ନିଜ ଭାଇଭଉଣୀ, ଏହି ଜ୍ଞାନ ପ୍ରତ୍ୟେକ ଲୋକର ଆସିଛି । ତେଣୁ ଏବେ ଆମେ ସେମାନଙ୍କୁ ପାଖକୁ ଆଣିବାକୁ ଚେଷ୍ଟା କରୁଛୁଁ । ଆଶା କରାଯାଏ, ଅଳ୍ପ କାଳ ପରେ ଆଦିବାସୀମାନେ ଶିକ୍ଷାଦୀକ୍ଷା ପାଇ ଆମରି ପରି ଶିକ୍ଷିତ ହୋଇଯିବେ । ତାହାହେଲେ ଯାଇ ଆମ ଦେଶ ପୂରା ସଭ୍ୟ ହେବ ଏବଂ ଆମ ଜାତିର ଗୌରବ ବଢ଼ିବ ।

ଆମରି ମାଆର ପିଲା ସନ୍ତାନ ସେହି ଆଦିବାସୀମାନଙ୍କ ମଧ୍ୟରୁ କେତେକଙ୍କ ଜୀବନକାହାଣୀ ଏଠାରେ ବର୍ଣ୍ଣିତ ହେଉଛି । ତାହା ପାଠ କଲେ ସେମାନଙ୍କ ଜୀବନଧାରଣ ପ୍ରଣାଳୀ ପ୍ରଭୃତି ଆମଠାରୁ କିପରି ପୃଥକ୍, ସହଜରେ ଜଣାପଡ଼ିବ ।

## ପ୍ରଶ୍ନ

୧ । 'ଆଦିବାସୀ' କହିଲେ କଣ ବୁଝାଯାଏ ? 'ଅନାର୍ଯ୍ୟ'ମାନଙ୍କୁ 'ଆଦିବାସୀ' ନାମ କାହିଁକି ଦିଆଯାଇଛି ?

୨ । ଆଦିବାସୀମାନଙ୍କ ସହିତ ତୁମେ କିପରି ବ୍ୟବହାର କରିବ ?

୩ । ଆମ ଓଡ଼ିଶାରେ କେତେ ଆଦିବାସୀ ଅଛନ୍ତି ?

୪ । ଆଦିମ, କୌତୂହଳ, ବାଦବୁଲି, ଅବସ୍ଥିତ, ଆଧୁନିକ, ଅଧିବାସୀ, ଉପାସନା—ଏହି ଶବ୍ଦଗୁଡ଼ିକୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଠନ କର ।

---

( ସ୍ୱାଗତ )

ବର୍ଷାଦିନର ପାହାଡ଼ିଆ ନଈ । କେଡ଼େ ଜୋର୍‌ରେ ତାର ସୁଅପାଣି ଦୌଡ଼ିଚାଲିଛି ଆଗକୁ ଆଗକୁ । ଏଇ ନଈ ଖରାଦିନେ ଶୁଖିଲା ଠେକଠେକ ହୋଇ ମଲାପରି ପଡ଼ିରହିଥିଲା । ତାର ଦେହ ଥିଲା ନିହାତି ଅଣଓସାରିଆ । କୋଡ଼ିଏ ପଚିଶ ହାତରୁ ବେଶୀ ହେବ ନାହିଁ । ପାହାଡ଼ପାଣିରେ ଏବେ ସେଇ ଦେହଟା କେତେ ଚଉଡ଼ା ହୋଇଯାଇଛି ସତେ ! ଯୌବନର ନୂଆ ବଳ ଆଉ ନୂଆ ତେଜ ପାଇ ଗର୍ବରେ ସେ କାହାକୁ ମାନୁ ନାହିଁ । ଯାହା ପାଉଛି, ସବୁ କୁଆଡ଼େ ଭସେଇନେଇ ଚାଲିଯାଉଛି ।

ବର୍ଷାଦିନ କଟି ନ ଯିବାଯାଏ ଏଭଳି ଭରା ନଈକୁ ପାର ହେବାର ଉପାୟ କଣ ? ସଭ୍ୟ ଦୁନିଆଠାରୁ ବହୁତ ଦୂରରେ ଏଇ ପାହାଡ଼ିଆ ଅଞ୍ଚଳ । କିଏ ବା ଏଠି ପୋଲ ତିଆରି କରିବ ?

ନଈଟିର ଦୁଇ ପାଖରେ କେତେ ଯେ ବଡ଼ ବଡ଼ ଗଛ ଭର୍ତ୍ତି ହୋଇଛି, ତାର ସଂଖ୍ୟା ନାହିଁ । ବେତ ଓ ଅନେକ ଜାତିର ବଣୁଆ ଲଟା ସେହି ଗଛମାନଙ୍କରେ ମାଡ଼ିରହିଛି । ଦୁଇ କୂଳର ଏଇ ମୋଟାଳିଆ ଲଟାସବୁ ଠାଏ ଠାଏ ଗଛଶିଖରୁ ବାହାରି ମୁହାଁମୁହିଁ ଭାବରେ ନଈମଝିକି ପଶିଯାଇଛି ଏବଂ ଗଣ୍ଠି ପଡ଼ିଲା ପରି ଶୂନ୍ୟରେ ଛନ୍ଦି ହୋଇ ରହିଛି । ଦୂରରୁ ଠିଆ ହୋଇ ଚାହିଁଲେ ଏ ଦୃଶ୍ୟଟି ଆଖିକୁ ଅତି ଚମତ୍କାର ଦେଖାଯାଏ । ଶୂନ୍ୟରେ ଝୁଲୁଥିବା ଏହି ଲଟା ଦୋଳିଟିକୁ ପ୍ରକୃତିର ଦାନ ଛଡ଼ା ଆଉ କଣ କୁହାଯାଇପାରେ ?

ଏ ହେଉଛି ଆସାମ ରାଜ୍ୟର ଗୋଟିଏ ପାହାଡ଼ିଆ ନଈର ଦୃଶ୍ୟ । ରମଣୀୟ 'ଗାରୋ' ପାହାଡ଼ ସେହି ରାଜ୍ୟରେ ଶୋଭାପାଏ । ତାହାରି କୋଳରେ, ପୁଣି ଆଖପାଖ ପାହାଡ଼ିଆ ନଈମାନଙ୍କ କୂଳରେ

ଏକପ୍ରକାର ଆଦିବାସୀ ଦଳ ଦଳ ହୋଇ ବାସ କରନ୍ତି । ସେମାନଙ୍କ ନାମ 'ଗାରୋ' । ବାଳକବାଳିକା ଓ ସ୍ତ୍ରୀପୁରୁଷମାନେ ଲଣ୍ଠାର ସେହି ଝୁଲ-ଢୋଲରେ ଉହାଳ ନାଚରେ ଏକ ସାଙ୍ଗରେ ଆଉ ସାଙ୍ଗକୁ ନାଚନାଚର ଡେଇଁ ଡେଇଁ ଚାଲିଯାନ୍ତି । ସେମାନଙ୍କ ନୃତ୍ୟଭଙ୍ଗୀପୂର୍ଣ୍ଣ ପାଦଚାଳନାରେ ନଈ ବୁକୁରେ ଏକ ଅପୂର୍ବ ଛଳ୍ ଛଳ୍ ଶବ୍ଦର ସୃଷ୍ଟି ହୁଏ ।

ଗାରୋମାନଙ୍କର ଏକ ବଡ଼ ଦଳ ପୂର୍ବ-ପାକିସ୍ଥାନର ମୟମନସିଂହ ଜିଲ୍ଲାରେ ମଧ୍ୟ ଦେଖାଯାନ୍ତି । ଗାରୋ ପାହାଡ଼, ତା ନିକଟରେ ଥିବା ବଣଜଙ୍ଗଲ ଓ ମୟମନସିଂହରେ ଯେତେ ଗାରୋ ଆଦିବାସୀ ଅଛନ୍ତି, ସେମାନଙ୍କ ମୋଟ ସଂଖ୍ୟା ଅଢ଼େଇ ଲକ୍ଷର ପାଖାପାଖି ବୋଲି ଜଣାଯାଏ ।

ଏମାନେ ନାନା ଅଞ୍ଚଳରେ ବାସକରିବା ଫଳରେ ଭିନ୍ନ ଭିନ୍ନ ସ୍ଥାନରେ କାଳକ୍ରମେ ଭିନ୍ନ ଭିନ୍ନ ନାମରେ ପରିଚିତ ହେଉଛନ୍ତି । ଅଁଇ, ଅକ୍ୱି, ଆଟଂ, ଆବେଙ୍ଗ, ଗରା, ଚିସକ, ଦୁଆଲ, ରୁଗା— ଏହିପରି ଅନେକ ନାମ ଦଳ ଅନୁସାରେ ହୋଇଯାଇଛି । ନାମରେ ପାର୍ଥକ୍ୟ ଥିଲେ ମଧ୍ୟ ସମସ୍ତେ ଗାରୋ ଶ୍ରେଣୀର ଅନ୍ତର୍ଗତ ବୋଲି ସ୍ୱୀକାର କରନ୍ତି । କେଉଁ କେଉଁଠାରେ ଏମାନଙ୍କ ମଧ୍ୟରେ ଆଚାର-ବ୍ୟବହାରରେ ଟିକିଏ ଟିକିଏ ପ୍ରଭେଦ ମଧ୍ୟ ଦେଖାଯାଇଥାଏ । ଏହା ଛଡ଼ା ଯେଉଁ ଗାରୋମାନେ ବଣ ବା ପାହାଡ଼ରେ ରହନ୍ତି, ସେମାନଙ୍କର ସାଧାରଣ ନାମ 'ପାହାଡ଼ିଆ ଗାରୋ' । ପୁଣି ଯେଉଁମାନେ ସମତଳ ଅଞ୍ଚଳରେ ବାସ କରନ୍ତି, ସେମାନଙ୍କ ନାମ 'ଲାମଦାନୀ' ।

ଗାରୋମାନଙ୍କ ମୁଖମଣ୍ଡଳ ଆକାରରେ ଚେପ୍ଟା ଓ ଗୋଲ, ନାକ ଚଉଡ଼ା, ମୁଣ୍ଡର ବାଳ କୁଞ୍ଚୁକୁଞ୍ଚିଆ, କାହାର କାହାର ବା କରଡ଼ା । ମଣିପୁରର 'କୁକି' ଆଦିବାସୀଙ୍କ ପରି ଏମାନେ ଡେଙ୍ଗସ୍ତ

ବୃନ୍ଦ୍ଧଭାଷାରେ କଥାବାର୍ତ୍ତା କରନ୍ତି । ଏହି ଭାଷାରେ କୌଣସି ଅକ୍ଷର ବା ଲିପି ନାହିଁ ।

ପର୍ବତ ବା ବଣର ଯେଉଁ ଅଂଶରେ ପ୍ରଚୁର ଫଳ ଜନ୍ମେ, ଏହି ଆଦିବାସୀମାନେ ସେହିଠାରେ କୁଡ଼ିଆ କରି ରହନ୍ତି । ଅଧିକାଂଶ



[ ଗାଦବ ରମଣୀ ]

ଗାଆଁ ନଈକୂଳରେ ଦେଖାଯାଏ । କୁଡ଼ିଆଗୁଡ଼ିକ ମୁହାଁମୁହିଁ ହୋଇ ଦୁଇଟି ରେଖା ଆକାରରେ ଲମ୍ବିଥାଏ ଏବଂ ତା ମଝିରେ ଖୁବ୍ ପ୍ରଶସ୍ତ ଦାଣ୍ଡଟିଏ ରହିଥାଏ । ପ୍ରତ୍ୟେକ ଗାଆଁର ଗୋଟିଏ ମୁଣ୍ଡରେ ଆଉଟା ଘରଟିଏ ଅଲଗା ହୋଇ ତୋଳା ଯାଇଥାଏ । ତାହାକୁ ଗାଦବମାନେ

'ନୋକ୍‌ପାନ୍ତେ' କହନ୍ତି । ଟୋକାମାନେ ଘରେ ଖାଇ ବଳରେ କାମ କରନ୍ତି ଏବଂ ରାତିଟି ଏଇ ନୋକ୍‌ପାନ୍ତେରେ ଏକାଠି କଟାନ୍ତି । କୁଡ଼ିଆଗୁଡ଼ିକ ଅନ୍ୟାନ୍ୟ ଆଦିବାସୀଙ୍କ କୁଡ଼ିଆ ପରି ମାଟିରେ ତୋଳା ହୁଏ ନାହିଁ । କାଠର ମଜବୁତ ଖୁଣ୍ଟିମାନ ପୋତି ଗାରୋମାନେ ତା ଦେହରେ ବାଉଁଶପାତିଆର ଚାଟି ବାନ୍ଧିଦିଅନ୍ତି । ଏହି ଚାଟି-ଗୁଡ଼ିକ ଏତେ ବହଳଭାବରେ ବୁଣାଯାଇଥାଏ ଯେ, ତାକୁ ଭେଦି ବର୍ଷା ବା ଶୀତ ଆଦୌ ଘର ଭିତରକୁ ପଶିପାରେ ନାହିଁ । ଚାଟିସବୁ ଏହିରୂପେ କାନ୍ଥର କାର୍ଯ୍ୟ କରିଥାଏ । ଘରର ଛାତ ଖଡ଼ତଣ୍ଡାରେ ଛପର କରାଯାଏ ।

ପ୍ରତ୍ୟେକ ଘରର ଲମ୍ବ ସତୁରି ବା ଅଶୀ ହାତରୁ କମ୍ ନୁହେଁ । ଗୃହର ସୁବିଧା ପାଇଁ ତାହା ବହୁତ ଛୋଟ ଛୋଟ ବଖରାରେ ଭାଗ ଭାଗ ହୋଇଥାଏ ଏବଂ ସେଗୁଡ଼ିକରେ ପ୍ରାୟ ଝରକା ନ ଥାଏ । ରନ୍ଧାବଢ଼ା, ଖିଆପିଆ ଏବଂ ଶୁଆବସା ପାଇଁ ଗୋଟିଏ ସ୍ୱତନ୍ତ୍ର ବଖରା ନିର୍ଦ୍ଦିଷ୍ଟ ହୋଇ ରହିଥାଏ । ଏହାଛଡ଼ା ବିଭିନ୍ନ ଘରକରଣା ଦ୍ରବ୍ୟ ଓ କୃଷି-ଉପକରଣ ଅନ୍ୟ ଦୁଇଟି ବଖରାରେ ରଖାହୁଏ । ଗୃହିଣୀମାନେ ରନ୍ଧାବଢ଼ା କାର୍ଯ୍ୟ ସରିଗଲେ ହାଣ୍ଡି, ଅଟିକା ପ୍ରଭୃତିକୁ ଘରମଝିରେ ଥିବା ଏକ ଛୋଟ ମଞ୍ଚା ଉପରେ ଥୋଇଦିଅନ୍ତି ।

କେତେକ ଗାରୋ ପରିବାର ବୃକ୍ଷ ଉପରେ ଘର ତିଆରି କରି ବାସ କରନ୍ତି । ବାଉଁଶରେ ଶିଢ଼ିଟିଏ ତଳରୁ ଘରପର୍ଯ୍ୟନ୍ତ ଲାଗିଥାଏ । ଗାରୋମାନେ ତାହାରି ସାହାଯ୍ୟରେ ଉପରକୁ ଉଠନ୍ତି ଏବଂ ତଳକୁ ଓହ୍ଲାନ୍ତି । ନୂଆ ତିଆରି ଘରେ ରହିବା ପୂର୍ବରୁ 'ଗୃହପ୍ରବେଶ' ଉତ୍ସବ କରାଯାଏ । ସେଦିନ ବେଶ୍ ନାଚଗୀତ ହୁଏ । ବନ୍ଧୁବାନ୍ଧବ ଓ ଗାଆଁ ଲୋକଙ୍କୁ ଭୋଜି ଦିଆଯାଏ ।

ପ୍ରତି ଗ୍ରାମରେ ଜଣେ ଗ୍ରାମପତି ଥାଏ । ତାହାକୁ 'ଲସ୍କର୍' କୁହାଯାଏ । ଲସ୍କର୍ ଗ୍ରାମର ଶାସକ ଓ ବିଚାରକରୂପେ କାର୍ଯ୍ୟ କରେ । ସେ ସାଧାରଣ ସମୟରେ କଳା ରଙ୍ଗର ପଗଡ଼ି ପିନ୍ଧି-ଥାଏ ; କିନ୍ତୁ ବିଚାରକାଳରେ ରେଶମ କନାର ଧଳା ପଗଡ଼ି ମୁଣ୍ଡରେ ଦିଏ । କିଏ ଦୋଷୀ ଓ କିଏ ନିର୍ଦ୍ଦୋଷ, ସେଥି ଲସ୍କର ମନ୍ତ୍ର ଉଚାରି ସ୍ଥିର କରିଦିଏ । ଏହି କାର୍ଯ୍ୟ ଏକ ଅଦ୍ଭୁତ ରୀତିରେ ହୋଇଥାଏ । ଯାହା ନାଆଁରେ ଫେରାଦ ହୋଇଥାଏ, ଲସ୍କର ତା ହାତରେ ଖଣ୍ଡେ ଜଳନ୍ତା ଲୁହା ଧରାଇଦିଏ । ଯଦି ଲୋକଟିର ହାତରେ ଫୋଟକା ନ ପଡ଼େ, ତାହାହେଲେ ସେ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହୁଏ ।

ଗାରୋ ସମାଜରେ ପୋଷାକ-ପରିଚ୍ଛଦର ଆଡ଼ମ୍ବର ନାହିଁ । ପୁରୁଷମାନେ ନୀଳ ରଙ୍ଗର ଏକପ୍ରକାର ଡୋରିଆ ଧୋତି ପିନ୍ଧନ୍ତି । ତହିଁରେ ନାଲି ରଙ୍ଗର ଡୋରିସବୁ ଚଢ଼ିଥାଏ । ଏହି ପ୍ରତ୍ୟେକ ଡୋରିର ଚଉଡ଼ା ଛଅ ଇଞ୍ଚ ଏବଂ ଲମ୍ବ ଛଅ ସାତ ଫୁଟ । ଏହି ଧୋତିର ନାମ 'ଗାଣ୍ଡୋ' । ସେମାନେ ଧୋତିର ଗୋଟିଏ କାନିକୁ ଆଗ ପଟରେ କୁଞ୍ଚଭଳି ଲମ୍ବାଇ ଦେଇଥାନ୍ତି । ସେମାନଙ୍କ ମୁଣ୍ଡରେ ବିଭିନ୍ନ ରଙ୍ଗର ପଗଡ଼ି ଥିବାର ଦେଖାଯାଏ । ସ୍ତ୍ରୀଲୋକମାନେ ଖଣ୍ଡେ ଖଣ୍ଡେ ଛୋଟ ଲୁଗା ଅଣ୍ଟାରେ ଗୁଡ଼ାଇଥାନ୍ତି । ତେଣୁ ତାର ଲମ୍ବ ଓ ଓସାର ଅତି କମ୍ । ଏହାର ନାମ 'ରିକଂ' । ଉତ୍ସବପର୍ବ ଦିନରେ ସେମାନେ କାନରେ କାନବାଲି ଓ ବେକରେ ହାର ପିନ୍ଧନ୍ତି । ଜଣେ ଜଣେ ସ୍ତ୍ରୀଲୋକ କୋଡ଼ିଏ ତିରିଶଟା କାନବାଲି ମଧ୍ୟ ପିନ୍ଧି-ଥିବାର ଦେଖାଯାଏ । ସେମାନଙ୍କର ବିଶ୍ୱାସ ଯେ, କାନରେ ଏହି ଅଳଙ୍କାର ଯେତେ ବେଶୀ ରହେ, ପରଲୋକକୁ ଯିବାପାଇଁ ସେତେ ସୁବିଧା ହୁଏ ।

ପ୍ରତ୍ୟେକ ଗାଦେ ପରିବାରରେ ଗୁଡ଼ିଏ ପିଢ଼ା ଥାଏ । କୁଣିଆ-ମଇଚ ବା ଅତିଥି ଅଭ୍ୟାଗତ ଆସିଲେ ସେମାନଙ୍କୁ ଏହି ପିଢ଼ାରେ ବସାଇ ଚର୍ଚ୍ଚା କରିଯାଏ । ଘରସରଞ୍ଜାମ କହିଲେ କେତୋଟି ଲାଉ-ଖୋଳ, ହାଣ୍ଡି ଆଣ୍ଟିକା, ବାଉଁଶର କୁଲା ବାଉଁଶିଆ ଟୋକେଇ, କାଠର ଢେମଦସ୍ତା, ଶିକାରର ଶର ଧନୁ ବର୍ଚ୍ଛା, ଚୁଷର କୋଡ଼ି ଦାଆ ଲଙ୍ଗଳ, ଆଉ ମାଛଧରା ଖଇଞ୍ଚ । ଏତକ ଛଡ଼ା ଆଉ କେଶୀ କିଛି ଜିନିଷ ପ୍ରାୟ କାହାରି ଘରେ ନ ଥାଏ । ଲାଉଖୋଳକୁ ଗାଦେ-ମାନେ କଳସୀରୂପେ ବ୍ୟବହାର କରନ୍ତି ଏବଂ କାଠର ଢେମଦସ୍ତାରେ ଅଳ୍ପ ଅଳ୍ପ କରି ଧାନ କୁଟନ୍ତି ।

ଗାଦେମାନେ କୃଷିଜୀବୀ । ଧାନ, ଯବ ଓ ଭୁଟ୍ଟା ସେମାନଙ୍କର ପ୍ରଧାନ ଶସ୍ୟ । ଏଥିପାଇଁ ଘରେ ଘରେ ବଳଦ ରଖିଥାନ୍ତି । ଫସଲ ଅମଳବେଳେ ସେମାନେ କ୍ଷେତରେ ଖଣ୍ଡିଏ ଲେଖାଏ ଅସ୍ଥାୟୀ ଘର ତିଆରି କରି ରାତିରେ ଜଗିରହନ୍ତି । ଏହାଦ୍ୱାରା ବଣଜନ୍ତୁମାନେ କ୍ଷେତରେ ପଶିପାରନ୍ତି ନାହିଁ । ଅନେକ ଘରେ ମରେଇ ଥାଏ । ସେଥିରେ ଧାନ ଅାଦି ରହେ । ମାଛ ଧରିବା ଓ ମନ୍ଦୁରା ବୁଣିବା କେତେ ଗାଦେଙ୍କର ଜୀବିକା । ଆଉ କେତେକ ଗାଦେ କପା ଚାଷ କରି ତାହାର ତୁଳାକୁ ବଜାରରେ ବିକି କରନ୍ତି । କେହି କେହି ବା ସୂତା ତିଆରି କରି ତନ୍ତରେ ଲୁଗା ବୁଣି ବିକନ୍ତି ।

ଭାତ ହେଉଛି ଗାଦେମାନଙ୍କର ପ୍ରଧାନ ଖାଦ୍ୟ । ଜୀବଜନ୍ତୁଙ୍କ ମାଂସ ମଧ୍ୟ ସେମାନେ ଖାଆନ୍ତି; ମାତ୍ର ଆଶ୍ଚର୍ଯ୍ୟର କଥା, ଘରେ କୁକୁଡ଼ା ଓ ଗାଈ ପାଳିଥିଲେ ମଧ୍ୟ ଅଣ୍ଡା ବା ଦୁଧ ସ୍ପର୍ଶ କରନ୍ତି ନାହିଁ । ସେମାନଙ୍କ ଦୃଷ୍ଟିରେ ଅଣ୍ଡା ହେଉଛି ପକ୍ଷୀର ଛୁଆ ସଙ୍ଗେ ସମାନ ଏବଂ ଗାଈର ଦୁଧ ମଧ୍ୟ ଗୋମୂତ୍ର ସହିତ ସମାନ ।

ଗାରୋମାନଙ୍କ ଭଗବାନ ହେଉଛନ୍ତି 'ତାତାରା-ରେବୁଗ' । ସେ ଏହି ପୃଥିବୀର ସୃଷ୍ଟିକର୍ତ୍ତା । ସେ ପ୍ରସନ୍ନ ହେଲେ ପୃଥିବୀରୁ ରୋଗବ୍ୟାଧି, ମଡ଼କମହାମାରୀ କୁଆଡ଼େ ଦୂର ହୋଇଯାଏ । ଏଥିପାଇଁ ଗାରୋମାନେ ତାଙ୍କୁ ଆଡ଼ମ୍ବରର ସହିତ ପୂଜା କରନ୍ତି ଏବଂ ତାଙ୍କ ଉଦ୍ଦେଶ୍ୟରେ ବଳଦ, ଛେଳି, କୁକୁଡ଼ା ବଳି ପକାଇ ମଦ ନୈବେଦ୍ୟ ଦିଅନ୍ତି ।

ସେମାନଙ୍କର ଧାରଣା, ତାତାରା-ରେବୁଗଙ୍କ ଅଧୀନରେ ଅନେକ ଦେବଦେବୀ ଅଛନ୍ତି । ସେ ସେମାନଙ୍କୁ ବିଭିନ୍ନ କ୍ଷମତା ଦେଇଛନ୍ତି । ସେଥିମଧ୍ୟରୁ 'ରୋଗବ୍ରତି' ହେଉଛନ୍ତି ଶସ୍ୟର ଦେବତା । ଗାରୋମାନେ ତାହାଙ୍କୁ ବରାହ ବଳି ଦିଅନ୍ତି । କ୍ଷେତଦେବତାଙ୍କ ନାମ 'ଶାଲଜଂ' । ସେ ସନ୍ତୁଷ୍ଟ ହେଲେ କ୍ଷେତର ଉର୍ବରଶକ୍ତି ବଢ଼େ । ତେଣୁ ତାଙ୍କୁ କ୍ଷେତରେ ପୂଜା କରି କୁକୁଡ଼ା ବଳି ଦିଆଯାଏ । ବଜ୍ର ଓ ବୃଷ୍ଟିର ଦେବତା ହେଉଛନ୍ତି 'ଗୋଏରା' ଏବଂ ମସୂରିକା ଓ ଉଦରାମୟ ରୋଗର ଦେବୀ ହେଉଛନ୍ତି 'ନୋରାଂ' ।

ଭୂତପ୍ରେତରେ ମଧ୍ୟ ଗାରୋମାନଙ୍କର ବିଶ୍ୱାସ ଅଛି । ସେମାନେ କହନ୍ତି, ଏହିମାନଙ୍କ ଦ୍ୱାରାରୁ ନାନାପ୍ରକାର ରୋଗ ଦେହରେ ମାଡ଼ିଯାଏ । ଏଥିପାଇଁ ସମସ୍ତେ ଭୂତପ୍ରେତଙ୍କୁ ଅତ୍ୟନ୍ତ ଭୟ କରନ୍ତି ।

କୌଣସି ଲୋକ ମରିଗଲେ ଗାରୋମାନେ ତାକୁ ଗାଡ଼ରେ ପୋତନ୍ତି । ମୃତ ବ୍ୟକ୍ତିର ହାତରେ ବାଟଖର୍ଚ୍ଚ ସ୍ୱରୂପ ଗୋଟିଏ ଟଙ୍କା ଏବଂ ସଜ୍ଜାସ୍ୱରୂପ କଣ୍ଠି ଗୁଡ଼ିକ, ଡାଲି, ପନପଖରା ଦିଅନ୍ତି ।

ଗାରୋମାନଙ୍କର ଧାରଣା, ମର୍ତ୍ତ୍ୟଠାରୁ ବହୁ ଦୂରରେ 'ମଂରୁ-ମଂଗ୍ରମ' ବୋଲି ଗୋଟିଏ ସୁନ୍ଦର ଦେଶ ଅଛି । ତାହା ଠିକ୍ ସ୍ୱର୍ଗ ପରି । ମଣିଷ ମରିଗଲେ ତାର ଆତ୍ମା ସେହି ଦେଶକୁ ଚାଲିଯାଏ ।

ଏଥିପାଇଁ ଗାଦେବ୍ମାନେ ଶବର ଡାହାଣ ଗୋଡ଼ର ବୁଢ଼ାଆଙ୍ଗୁଠିରେ ଗୋଟିଏ କୁକୁଡ଼ା ବାନ୍ଧି ଦିଅନ୍ତି । କୁକୁଡ଼ାଟିକୁ ସଙ୍ଗୀରୂପେ ପାଇଲେ ଆତ୍ମା ସୁବିଧାରେ ଦୂର ଦେଶକୁ ଯାଇପାରିବ ବୋଲି ସେମାନଙ୍କର ବିଶ୍ୱାସ ।

ଗାଦେବ୍ ସମାଜରେ ପୁଅ ପୈତୃକ ସମ୍ପତ୍ତିର ମାଲିକ ନ ହୋଇ ଝିଅ ମାଲିକ ହୋଇଥାଏ । ଝିଅଟି ମରିଗଲେ ତା ଝିଅ ପୁଣି ସମ୍ପତ୍ତିର ମାଲିକ ହୁଏ । ଏହି କାରଣରୁ ପୁଅମାନଙ୍କର ଘରପ୍ରତି ବିଶେଷ ମାୟାମମତା ଆସେ ନାହିଁ ଏବଂ ସେମାନେ ଘରେ ମୁଠିଏ ଖାଇଦେଇ ଆଡ଼୍ଡା ଘର ବା 'ଦୋକ୍ପାନ୍ଦେ'ରେ ଯାଇ ସମୟ କଟାନ୍ତି । ପରିବାରରେ ଏକାଧିକ କନ୍ୟା ଥିଲେ ଯେଉଁ କନ୍ୟାଟି ବାପମାଆଙ୍କର ସବୁଠୁ ବେଶୀ ପ୍ରିୟ, ସେହି କନ୍ୟାଟି ପିତୃ-ସମ୍ପତ୍ତି ଭୋଗ କରେ । ଏଭଳି କନ୍ୟାର ନାମ 'ନକ୍ନା' ଏବଂ ତା ବରର ନାମ 'ନକ୍ଦେମ୍' । ନକ୍ଦେମ୍‌କୁ କନ୍ୟାର ଘରେ ଘରଜୋଇଁଆ ହୋଇ ରହିବାକୁ ପଡ଼େ । ବାପମାଆ ବୁଢ଼ାବୁଢ଼ୀ ହୋଇଗଲେ ନକ୍ନା ତାଙ୍କର ସମସ୍ତ ଯତ୍ନ ନିଏ ଏବଂ ତାଙ୍କ ମୃତ୍ୟୁ ପରେ ଶ୍ରାଦ୍ଧ ଆଦି କରେ ।

ହିନ୍ଦୁମାନଙ୍କ ପରି ଗାଦେବ୍ମାନଙ୍କର ମଧ୍ୟ ବିଭିନ୍ନ ଗୋତ୍ର ଅଛି । ତାହାକୁ ସେମାନେ 'ମ୍ୟାଠଂ' କହନ୍ତି । ସାଧାରଣତଃ କନ୍ୟା-ମାନେ ପିଉସୀପୁଅ ଭାଇକୁ ବିବାହ କରିଥାନ୍ତି । ପ୍ରତ୍ୟେକ ବିବାହ କନ୍ୟାର ମତଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । କନ୍ୟା ନିଜେ ନିଜର ବର ବାଛେ । ତାର ପ୍ରଥମ ନିର୍ବାଚିତ ଯୁବକଟି ଯଦି ରାଜି ନହୁଏ, ତେବେ କନ୍ୟା ସେହି ଯୁବକର ଗୋତ୍ରରୁ ଆଉ ଗୋଟିଏ ବର ବାଛେ । 'ଆଦେବ୍' ଗାଦେବ୍ମାନଙ୍କ ସମାଜରେ ଏଥିର ବ୍ୟତିକ୍ରମ ଦେଖାଯାଏ । କନ୍ୟା ଯାହାକୁ ବର କରିବାପାଇଁ ସ୍ଥିର କରେ, ତା ଘରକୁ ଯାଇ ନିଜର ମତ ଜଣାଇଦେଇ ଆସେ । ତାହା ଶୁଣି ଉକ୍ତ

ବର ଘର ଛାଡ଼ି ଅନ୍ୟ ଗ୍ରାମରେ ଲୁଚିରହେ । କନ୍ୟାଘରର ଲୋକେ ଖୋଜି ଖୋଜି ତାକୁ ସେହି ଗ୍ରାମରୁ ଧରି ନେଇଆସିଲେ ବିବାହ କାର୍ଯ୍ୟ ସମ୍ପାଦିତ ହୁଏ ।



ଗାଦବା ସମାଜରେ କନ୍ୟାପଣ ବା ବରପଣ ଆଦୌ ନାହିଁ । ବିବାହଦିନ ପୁରୋହିତ ଆସେ ଏବଂ ଗୋଟିଏ କୁକୁଡ଼ା କାଟି ବର-କନ୍ୟାଙ୍କ କପାଳରେ ଛୁଆଁଇଦିଏ । ଏହି ପୁରୋହିତକୁ 'ଜମାନ' କୁହାଯାଏ ।

ଏହି ସମାଜରେ ବିଧବାବିବାହ ପ୍ରଥା ପ୍ରଚଳିତ ଅଛି । ଗାଦବାରମଣୀ ବିଧବା ହେଲେ ଦେଢ଼ଶୁରର ପୁଅ ବା ଦିଅରର ପୁଅକୁ ବିବାହ କରେ । ଏଣୁ ତାର ବୟସ ନୂଆ ସ୍ୱାମୀର ବୟସ-ଠାରୁ ଯଥେଷ୍ଟ ଅଧିକ ହୁଏ । ଅନ୍ୟ କାହାକୁ ବିବାହ କଲେ ପୈତୃକ ସମ୍ପତ୍ତିରୁ ତାର ଅଧିକାର ଚାଲିଯିବ ବୋଲି ସେ ବାଧ ହୋଇ ଏପରି ବିବାହ କରିଥାଏ । ଯେଉଁ ବିଧବାମାନଙ୍କର ପୈତୃକ ସମ୍ପତ୍ତିରେ ଦାବୀ ନ ଥାଏ, ସେମାନେ ଅନ୍ୟତ୍ର ବିବାହ କରିଥାନ୍ତି ।

ଆଶ୍ୱିନ ମାସରେ ଯେତେବେଳେ ଶରତର ଚନ୍ଦ୍ର ଗାଆଁ ଚାରିପଟ ବାଉଁଶ ବଣର ମଥା ଉପରକୁ ଉଠି ରୂପେଲି କିରଣରେ ଚାରିଆଡ଼ ହସାଇଦିଏ, ସେତେବେଳେ ଗାଦବା ଯୁବକଯୁବତୀ-ମାନଙ୍କର ଆନନ୍ଦର ସୀମା ରହେ ନାହିଁ । ସମସ୍ତେ ମିଳି ଆରମ୍ଭ କରିଦିଅନ୍ତି କେତେପ୍ରକାର ନାଚ, କେତେପ୍ରକାର ଗୀତ । ସାରା ଗାଆଁଟି ତହିଁରେ ଉତ୍ସବମୟ ହୋଇଉଠେ ।

ବୁଢ଼ାବୁଢ଼ୀମାନଙ୍କ ପେଟରେ କେତେ ଯେ ରୂପକଥା, କେତେ ଯେ ପୁରୁଣା କାଳର କାହାଣୀ ଭର୍ତ୍ତି ହୋଇ ରହିଛି, ତାହା କହି ହେବ ନାହିଁ । ଦିବସମାନଙ୍କରେ ବାଳକବାଳିକାମାନେ ଗୋସିଁ ବାପା, ଗୋସିଁ ମାଅଙ୍କ ପାଖରେ ବସିଯାନ୍ତି । ସେମାନଙ୍କ-ଠାରୁ ଶହ ଶହ କାହାଣୀ ଓ ରୂପକଥା ଶୁଣି ହସି ହସି ଗଡ଼ିଯାନ୍ତି ।

ଗାଦବେ ସମ୍ପ୍ରଦାୟର ପ୍ରଥମ ବାସସ୍ଥାନ ଓ ନାମକରଣ ସମ୍ବନ୍ଧରେ ଗୋଟିଏ କମ୍ବଦନ୍ତୀ ଅଛି । ସେମାନଙ୍କ ପୂର୍ବପୁରୁଷମାନେ ଜ୍ୱାମାଳପୁର ଆରପଟେ ଜଙ୍ଗଲରେ ରହୁଥିଲେ । ଜ୍ୱାମାଳପୁ ଏପଟ ଦେଶ ଦେଖିବାକୁ ପ୍ରବଳ ଇଚ୍ଛା ହେବାରୁ ସେମାନେ ନିଜ ଦଳପତିଙ୍କ ସହିତ ଭାରତଭୂମିକୁ ଚାଲି ଆସିଲେ । ପରେ ସେହି ବିରାଟ ଦଳଟି ବିଭିନ୍ନ ଉପଦଳରେ ବିଭକ୍ତ ହୋଇ ଭିନ୍ନ ଭିନ୍ନ ଅଞ୍ଚଳରେ ରହିଲେ ଏବଂ ଭିନ୍ନ ଭିନ୍ନ ନାମରେ ପରିଚିତ ହେଲେ । କଥିତ ଅଛି, ପ୍ରଥମେ ଯେଉଁ ଦଳପତି ଆସିଥିଲେ, ତାଙ୍କର ନାମ ଥିଲା 'ଗାରୁ' । ସେହି 'ଗାରୁ' ଶବ୍ଦରୁ ମୂଳ ସମ୍ପ୍ରଦାୟଟିର ନାମ 'ଗାଦବେ' ହୋଇଥିଲା । ଆଜି ସେମାନେ ପ୍ରଥମେ ଯେଉଁ ପାହାଡ଼ରେ ରହି-ଥିଲେ, ତାର ନାମ ହେଲା 'ଗାଦବେ ପାହାଡ଼' ।

## ପ୍ରଶ୍ନ

୧ । 'ଗୃହପ୍ରବେଶ' ଉତ୍ସବରେ କଣ କରାଯାଏ ?

୨ । ଗାଦବେ ବାଳକମାନେ କାହିଁକି ଘରେ ନ ରହି ଆଡ଼ଡ଼ାଘରେ ରହନ୍ତି ?

୩ । ଗାଦବେମାନେ କପରି ଜୀବିକା ନିର୍ବାହ କରନ୍ତି ?

୪ । ସେମାନଙ୍କର ଭଗବାନଙ୍କ ନାମ କଣ ? ତାଙ୍କ ଅଧୀନରେ କେଉଁ କେଉଁ ଦେବଦେବୀ ଅଛନ୍ତି ?

୫ । ଶୂନ୍ୟ ସ୍ଥାନ ପୂର୍ଣ୍ଣ କର :—

(କ) ଗାଦବେମାନେ ଆଡ଼ଡ଼ାଘରକୁ — କହନ୍ତି ।

(ଖ) ସେମାନଙ୍କ ଗ୍ରାମପତିକୁ — କୁହାଯାଏ ।

(ଗ) ଉତ୍ତରରୁ ଆସିଥିବା ପ୍ରଥମ ଦଳପତିଙ୍କ ନାମ — ଥିବାରୁ ଏହି ସମ୍ପ୍ରଦାୟର ନାମ 'ଗାଦବେ' ହେଲା ।

———

# ବିରହୋର

ଛୋଟନାଗପୁରର ମନୋହର ଉପତ୍ୟକା । ନିବିଡ଼ ବନ ତାହାର ଚତୁର୍ଦ୍ଦିଗକୁ ବେଢ଼ି ଶୋଭା ପାଉଛି । ବଡ଼ ବଡ଼ ଶାଳବୃକ୍ଷ ଊର୍ଦ୍ଧ୍ୱକୁ ମଥା ଟେକି ନିମ୍ନଭୂମିକୁ ଅନ୍ଧାର କରିଦେଇଛି । ଅଶ୍ୱତ୍ଥ ଓ ବଟବୃକ୍ଷର ଶାଖାରେ ବସି କାଠହଣା ପକ୍ଷୀମାନେ ଠକ୍‌ଠକ୍ ଶବ୍ଦ-ଦ୍ୱାରା ଅରଣ୍ୟର ନୀରବତା ଭଙ୍ଗ କରିଦେଉଛନ୍ତି । ଅସଂଖ୍ୟ କଣ୍ଟାବାଉଁଶ-ଗଛ ବନର ଗୋଟିଏ ଗୋଟିଏ ଅଞ୍ଚଳକୁ ଭରିରଖିଛି । ସେମାନଙ୍କ ଉପରେ 'ଚପ' ନାମକ ଏକପ୍ରକାର ଗହଳିଆ ଲତା ମାଡ଼ିଛି । ଏହି ଲତାରୁ ଉତ୍କୃଷ୍ଟ ଦଉଡ଼ି ତିଆରି ହୁଏ ।

ଗ୍ରୀଷ୍ମଦିନରେ ବୃକ୍ଷମାନଙ୍କର ଗହଳ ପତ୍ରରାଶି ଯୋଗୁଁ ବନ ତଳଟି ଶୀତଳ ରହେ । ବର୍ଷାଋତୁର ମୂଷଳ ବୃଷ୍ଟିଧାରାରେ ବଣଭୂଇଁ ପୂରିଯାଏ । ଶୀତକାଳରେ ଶୈତ୍ୟର ପ୍ରକୋପ ପ୍ରବଳ ହୋଇଉଠେ । ବସନ୍ତଋତୁରେ ମଳୟ ସମୀର ମୃଦୁମନ୍ଦ ଗତିରେ ପ୍ରବାହିତ ହୁଏ । ତରୁଲତାମାନ ଫୁଲଶୋଭାରେ ହସିଉଠନ୍ତି । ଦଳକୁ ଦଳ ମହୁମାଛି ମଧୁର ଗୁଞ୍ଜନ କରି ଆନନ୍ଦରେ ଗୁହ୍ଲଆଡ଼େ ଉଡ଼ିବୁଲନ୍ତି ।

ଏହି ପ୍ରକାଣ୍ଡ ବନରେ ହିଂସ୍ର ଜନ୍ତୁଙ୍କର ଅଭାବ ନାହିଁ । ବାଘ, ଭାଲୁ, ହେଟା, ବରାହ, ଅରଣାମଇଁଷି, ବାନର, ନୀଳଗାଈ ପ୍ରଭୃତି ଏଣେତେଣେ ବିଚରଣ କରୁଥାନ୍ତି ।

ଏହିରୂପେ ଦେଖିବାକୁ ଗଲେ ବନଭୂମିଟି ଯେତିକି ସୁନ୍ଦର, ସେତିକି ଭୟଙ୍କର । ଏହି ବନରାଜ୍ୟରେ ନିଷ୍କଣ୍ଟକ ରାଜା ପରି ଏକ ଜାତିର ଲୋକ ବାସ କରନ୍ତି । ସେମାନେ ହେଉଛନ୍ତି 'ବିରହୋର' ନାମକ ଆଦିବାସୀ । ସାରା ବନଟି ହେଉଛି ତାଙ୍କର ମାତୃଭୂମି ।

ବନର ଯେତେପ୍ରକାର ସମ୍ପଦ, ସବୁର ମାଲିକ ସେହିମାନେ । ବିରହୋର ଶବ୍ଦର ଅର୍ଥ 'ଜଙ୍ଗଲି ମଣିଷ' ।

ବିରହୋରମାନେ ଗେଡ଼ା । ସେମାନଙ୍କର ବର୍ଣ୍ଣ କଳା, ଲମ୍ବା ମୁଣ୍ଡରେ କଳା କୁଞ୍ଚକୁଞ୍ଚ ବହଳ କେଶ, ନାକ ଚଉଡ଼ା, ଦେହରେ ଲୁଗାପଟା ଖୁବ୍ କମ୍ । ସେମାନେ ହଜାରିବାଗ ଓ ପାଲାମୌରେ ଅନେକ ସମୟରେ ଦେଖାଯାନ୍ତି । ଦଳେ ଦୁଇ ଦଳ ବିରହୋର ସିଂହଭୂମିରେ ମଧ୍ୟ ଡେରା ପକାଇ ବର୍ଷର କେତେକ ସମୟ କଟାନ୍ତି । ସେମାନଙ୍କର ସଂଖ୍ୟା ପ୍ରାୟ ତିନି ହଜାର । ମୁଣ୍ଡାରୀ ଓ ସାନ୍ତାଳୀ ଭାଷାର ମିଶ୍ରଣରେ ବିରହୋର ଭାଷା ଗଠିତ । ବିରହୋରମାନଙ୍କର କେତେକ ନିଜସ୍ୱ ଶବ୍ଦ ମଧ୍ୟ ଏହି ଭାଷାରେ ଦେଖାଯାଏ ।

ବିରହୋରମାନେ ଦୁଇ ଦଳରେ ବିଭକ୍ତ । ଗୋଟିଏ ଦଳର ନାମ 'ଉଥ୍ଲୁ' ବା 'ଭୁଲିଆ' ଏବଂ ଅନ୍ୟ ଦଳର ନାମ 'ଯଘୀ' ବା 'ଥାନିଆ' । ଭୁଲିଆମାନେ ଜଙ୍ଗଲରୁ ଜଙ୍ଗଲ ବୁଲୁଥାନ୍ତି । ସେମାନଙ୍କର କୌଣସିଠାରେ ସ୍ଥାୟୀ ଘରଦ୍ୱାର ନାହିଁ । ଯେଉଁଠାକୁ ସେମାନେ ଯାଆନ୍ତି, ସେଠାରେ ଗଛର ଡାଳପତ୍ରଦ୍ୱାରା କୁଡ଼ିଆ ତିଆରି କରିନେଇ କିଛି ଦିନ ରହନ୍ତି । ପୁଣି ଅନ୍ୟ ସ୍ଥାନକୁ ଚାଲିଗଲେ ସେହିପରି କୁଡ଼ିଆ ତିଆରି କରି ବାସ କରନ୍ତି, ଅଧିକ ସମୟ କଟାଇଦିଅନ୍ତି ।

ଭୁଲିଆ ବିରହୋରମାନେ ଦଳ ବାନ୍ଧି ବିଭିନ୍ନ ଅଞ୍ଚଳରେ ବୁଲୁଥାନ୍ତି । ପ୍ରତ୍ୟେକ ଦଳରେ କେତୋଟି ପରିବାରର ଲୋକ ଏକାଠି ଥାଆନ୍ତି । ନିତାନ୍ତ ଦରକାରୀ କେତେକ ଉପକରଣ ସେମାନଙ୍କ ସଙ୍ଗରେ ବରାବର ରହିଥାଏ । ସେମାନେ ଧାଡ଼ି ବାନ୍ଧି ଯାତ୍ରା କରୁଥିବା ବେଳର ଦୃଶ୍ୟ ଦେଖିବାକୁ ପାଖ ଗାଆଁମାନଙ୍କର ଲୋକେ ଦଳ ଦଳ ହୋଇ ଧାଆନ୍ତି ।

ଦଳର ସବା ଆଗରେ ବାଟ କଢ଼େଇ ଚାଲିଥାଏ ଜଣେ ବେଣ୍ଡିଆ ଭୂଇଁଆ—ମୁଣ୍ଡରେ ତାର ଗୋଟିଏ ପେଡ଼ି । ସେହି ପେଡ଼ି-ଭିତରେ ସେମାନଙ୍କ ଇଷ୍ଟଦେବତାଙ୍କ ମୂର୍ତ୍ତି ରହିଥାନ୍ତି । ଯେତେକ ପୁଅଝିଅ, ସମସ୍ତେ ସେହି ବେଣ୍ଡିଆଟିର ପଛେ ପଛେ କୁକୁଡ଼ା ଧରି ଧାଇଁଥାନ୍ତି । ସେଗୁଡ଼ିକ ଇଷ୍ଟଦେବତାଙ୍କ ପୂଜାସମୟରେ ବଳିପଡ଼େ । ପୁରୁଷମାନେ କିଏ ମୁଣ୍ଡରେ ଜାଳେଣି କାଠ ମୁଣ୍ଡାଇ, କିଏ କାନ୍ଧରେ ଟାଙ୍ଗିଆ ଝୁଲାଇ, କିଏ ଶରଧନୁ ଧରି, ପୁଣି କିଏ ବା ଲଠି ଓ ଜାଲମୂଠା ଘେନି ପିଲାଙ୍କ ପଛରେ ଚାଲିଥାନ୍ତି । ସେମାନଙ୍କ ପରେ ସ୍ତ୍ରୀଲୋକମାନେ ଯାଉଥାନ୍ତି । ବୟସ୍କାମାନଙ୍କ ମଧ୍ୟରୁ କାହା ହାତରେ ଥାଏ ଶୀତଳପାଟି, କାହା ହାତରେ ବା ନଟେଇ । ଯୁବତୀମାନେ ହାଣ୍ଡିକୁଣ୍ଡେଇ, ପେଡ଼ିପେଟରା ପ୍ରଭୃତି ଯାବତୀୟ ଘରକରଣା ଜିନିଷ ଧରି ଚାଲିଥାନ୍ତି ।

ଦଳଟିଯାକ ଏହିରୂପେ ଯାଇ ଗୋଟିଏ ସ୍ଥାନରେ ଡେରା ପକାନ୍ତି । ସପ୍ତାହେ ବା ଦୁଇ ସପ୍ତାହ ସେଠାରେ ରହି ଅନ୍ୟ ସ୍ଥାନକୁ ଡେରା ଉଠାନ୍ତି । ପୁଣି ଯାତ୍ରା ଆରମ୍ଭ ହୁଏ । ସେହି ଯାତ୍ରାର କେବେ ଶେଷ ନଥାଏ । ଦୁଇ ତିନି ବର୍ଷ ପର୍ଯ୍ୟନ୍ତ ଏହିପରି ଠାଆକୁ ଠାଆ ବୁଲି ଶେଷରେ ସେମାନେ ନିଜର ପୁରୁଣା ଜାଗାକୁ ଥରେ ଫେରିଆସନ୍ତି ।

ଅନ୍ୟ ବରହୋରମାନେ ବନସୀମାରେ କାଠ, ବାଉଁଶ ଓ 'ଚପ' ଦଉଡ଼ି ସାହାଯ୍ୟରେ ଛୋଟ ଛୋଟ କୁଆଁଣିଆ କୁଡ଼ିଆଘର ନିର୍ମାଣ କରି ବାସକରନ୍ତି । ସେହି କୁଡ଼ିଆମାନଙ୍କ ଉପରେ ଗଛପତ୍ର ସବୁ ଛୁଆଣି ହୋଇଥାଏ । ଭୂଇଁଆ ବରହୋରମାନଙ୍କର ବାଉଁବୁଲା ଜୀବନକୁ ସେମାନେ ଆଦୌ ପସନ୍ଦ କରନ୍ତି ନାହିଁ ।

ଏହିପରି ଦଶ ବାରଟି ଘରରେ ଗୋଟିଏ ଗାଆଁ ଗଢ଼ା ଯାଇଥାଏ । ବରହୋରମାନଙ୍କ ଭାଷାରେ ଏହି ଗାଆଁକୁ 'ଟାଣ୍ଡା'

ବୋଲ୍‌ଯାଏ । ସେଠାର ଥନଆମାନେ ବନମଧ୍ୟରେ ପକ୍ଷୀ ନାନା ଜୀବଜନ୍ତୁ ଶିକାର କରନ୍ତି ଓ ଫଳମୂଳ ସଂଗ୍ରହ କରି ଆଣନ୍ତି । କେହି କେହି 'ଚପ' ଲତା କାଟି ତହିଁରୁ ଦଉଡ଼ି ତିଆରି କରନ୍ତି ଏବଂ ସେହି ଦଉଡ଼ିସବୁ ଦୂର ଗାଆଁଗଣ୍ଡାରେ ଲୋକଙ୍କୁ ଦେଇ ତା ବଦଳରେ ସେମାନଙ୍କଠାରୁ କିଛି ଦରକାରୀ ଜିନିଷ ଆଣନ୍ତି ।

ଥନଆମାନଙ୍କ କୁଡ଼ିଆରେ ଦୁଇଟି କକ୍ଷ ଥାଏ । ସେଥିରୁ ଗୋଟିଏ ହେଉଛି ଶୋଇବା ଘର ଏବଂ ଅନ୍ୟଟି ଭଣ୍ଡାର ଘର । ପ୍ରତ୍ୟେକ 'ଟାଣ୍ଡା'ର ନିକଟରେ ପୁରୁଣା ଆମ୍ବଗଛମାନଙ୍କର ଗୋଟିଏ କୁଞ୍ଜ ଥାଏ । ତାହାକୁ 'ଜୂଅର' ବା 'ଜିଲ୍ ଜୂଅର' କହନ୍ତି । ସେହି କୁଞ୍ଜରେ ଥିବା ସବୁଠୁ ବଡ଼ ଆମ୍ବଗଛଟିର ମୂଳରେ ପଥର ବସିଥାଏ । ସେହି ଜାଗାଟି ହେଉଛି ସେମାନଙ୍କ ଦେବତାଙ୍କର ଆବାସସ୍ଥଳ ।

ଅନେକ ଟାଣ୍ଡାର ଏକ ମୁଣ୍ଡରେ ଅଲଗା ହୋଇ ଗୋଟିଏ ଘର ଥାଏ । ଏହି ଘରର ନାମ 'ଗିତିଓଡ଼ା' ଅର୍ଥାତ୍ 'ଅଭିଆଡ଼ା ଟୋକାଙ୍କ ଆଡ୍‌ଡ଼ା' । ଗ୍ରାମର ଅବିବାହିତ ଯୁବକମାନେ ଏହି ଗିତିଓଡ଼ାରେ ଶୋଇ ରାତି କଟାନ୍ତି; ଆଉ ଅବିବାହିତା କିଶୋରୀମାନେ କୌଣସି ବୟସ୍କା ବିଧବାର ଘରକୁ ଯାଇ ତାହାରି ପାଖରେ ରାତିରେ ଶୁଅନ୍ତି ।

କ୍ରମେ ରାତିର ଅନ୍ଧାର ଧୁଆଁଯାଏ । ପୂର୍ବ ଆକାଶରେ ଉଷାର ଶୋଭା ଖେଳିଉଠେ । ପକ୍ଷୀମାନେ ଗୀତ ଗାଇ ନୀଡ଼ ଛାଡ଼ନ୍ତି । ସେହି ରବ ଶୁଣିବାମାତ୍ରେ ଥନଆ ରମଣୀ ଓ କିଶୋରୀମାନଙ୍କ ନିଦ ଭାଙ୍ଗିଯାଏ । ବାଳସୂର୍ଯ୍ୟର ସୁନେଲି କିରଣ ଗଛମାନଙ୍କ ଅଗରେ ନ ପଡ଼ୁଣୁ ସେମାନେ ଶେଯ ଛାଡ଼ି ଘରଦ୍ୱାର ଓଳାଇବାରେ ଲଗିଯାନ୍ତି । ତାପରେ ସ୍ନାନାଦି ସାରି ଜଳ ଆଣି ରନ୍ଧାକାମ ଆରମ୍ଭ କରିଦିଅନ୍ତି ।

ପୁରୁଷମାନେ ଉଠି ମୁହଁ ହାତ ଧୋଇପକାନ୍ତି ଏବଂ ସମସ୍ତ ପ୍ରାତଃକୃତ୍ୟ ସାରି 'ଚପ' ଦଉଡ଼ିଗୁଡ଼ିକୁ ଘଷି ସଫା ଓ ସୁନ୍ଦର କରିଦିଅନ୍ତି । ଏଥିମଧ୍ୟରେ ବୃଦ୍ଧଣୀମାନଙ୍କର ଭୋଜନରନ୍ଧଣା ସରି-ଯାଇଥାଏ । ସକାଳୁ ସକାଳୁ ସାମାନ୍ୟ କିଛି ଖାଇଦେଇ କେତେକ



[ ବରହୋର ରମଣୀ ]

ପୁରୁଷ ଦଉଡ଼ି ନେଇ ଗାଆଁ ଗଣ୍ଡାକୁ ବାହାରିଯାନ୍ତି । ଆଉ କେତେକ ପୁରୁଷ ଦଳ ବାନ୍ଧି ଶିକାର ପାଇଁ ଜଙ୍ଗଲ ଭିତରେ ପଶନ୍ତି । ନୋହିଲେ ଅନେକ ଥରଆ 'ଚପ'ଲତା କାଟିବାକୁ ମଧ୍ୟ ଚାଲିଯାନ୍ତି ।

ସବୁ ଦିନେ ଶିକାର ଜୁଟେ ନାହିଁ । ବେଳେ ବେଳେ ଶିକାରୀ-ମାନଙ୍କୁ ଖାଲିହାତରେ ଘରକୁ ଫେରିବାକୁ ପଡ଼େ । ସେଦିନ ସେମାନଙ୍କ ଭାଗ୍ୟରେ ମାଂସ ଖାଇବାର ଯୋଗ ପଡ଼େ ନାହିଁ । ଦୁର୍ଯୋଗକୁ ଯଦି ଘରେ ଭାତ ନ ଥାଏ, ତାହାହେଲେ ଝୁମ୍ପୁଆଳୁର ସିଝା ହିଁ ସେଦିନ ଏକମାତ୍ର ଆହାର ହୁଏ । ସମୟ ସମୟରେ ସମସ୍ତ

ଲୁହନୁଣ୍ଟୁ ମଧ୍ୟ କେବଳ ଏହା ଆଲୁସିଝା ଖାଇ ଗୃହ ପାଞ୍ଚ ଦିନ ଚଳିଯିବାକୁ ପଡ଼ିଥାଏ । ଯେଉଁ ଦିନ ଭଲ ଶିକାର ଜୁଟିଯାଏ, ସେଦିନ ଥନଆମାନଙ୍କର ଭୋଜନ ବଡ଼ ତୃପ୍ତିକର ହୁଏ ।

ରନ୍ଧାବଢ଼ା କାମ ଓ ପିଲପିଲଙ୍କ ଜଞ୍ଜାଳ ତୁଟାଇଦେଲା ପରେ ଥନଆ ରମଣୀମାନେ ମହୁଲ ଫୁଲ ସଂଗ୍ରହ କରିବା ପାଇଁ ବନମଧ୍ୟକୁ ଚାଲିଯାନ୍ତି । ଆଜି କେତେକ ସ୍ତ୍ରୀଲୋକ ଗ୍ରାମମାନଙ୍କୁ ଯାଇ ମଜୁରି ଖଟନ୍ତି ଏବଂ ମୂଲ ବାବଦକୁ ଚାଉଳ, ଡାଲି, ତେଲ, ମସଲା ଘେନି ନିଜ ନିଜ କୁଡ଼ିଆକୁ ଫେରନ୍ତି ।

ବରହୋର ସମାଜରେ ପରିଚ୍ଛଦର ବଡ଼ ବ୍ୟବହାର ନାହିଁ । ପୁରୁଷମାନେ ଖଣ୍ଡେ ଖଣ୍ଡେ ମୋଟା କନା ଅଣ୍ଟା ପାଖରେ ଲେଙ୍ଗୁଟି ଭଳି ଗୁଡ଼ାଇଥାନ୍ତି । ସେମାନେ କମରରେ ଗୋଟିଏ ଲେଖାଏଁ ଚିମୁଟା ଝୁଲାଇଥାନ୍ତି । ବଣବୁଲାରେ ଯଦି ପାଦତଳିପାରେ କଣ୍ଟା ପଶିଯାଏ, ତାହାହେଲେ ସେହି ଚିମୁଟାସାହାଯ୍ୟରେ ସେମାନେ କଣ୍ଟାକୁ କାଢ଼ିଆଣନ୍ତି ।

ନାରୀମାନେ ମୋଟା ଶାଢ଼ୀରେ ଦେହ ଆବୃତ କରନ୍ତି । କଣ୍ଠରେ ପୋହଳାକଣ୍ଠି ଓ ହାତରେ ବାଲି ପିନ୍ଧନ୍ତି । ଏହାଛଡ଼ା ସେମାନେ ଏକପ୍ରକାର କଅଁଳପତ୍ରରେ ଗହଣା ତିଆରି କରି ବାହୁ ଓ କାନ ସଜାନ୍ତି । ପୁଣି ଜୁଡ଼ାରେ ଫେନ୍ଥି ଫୁଲ ଖୋଷନ୍ତି । ପର୍ବପର୍ବାଣି ବା ଆମୋଦଉତ୍ସବରେ ବରହୋର ରମଣୀମାନେ ମଥାରେ ସିନ୍ଦୂର ଘେନନ୍ତି । ଝିଅମାନଙ୍କର ବୟସ ଏଗାର ବାର ବର୍ଷ ହେଲେ ସେମାନଙ୍କ ଦେହରେ ନାନାପ୍ରକାର ଚିତା କୁଟାପାଏ । ଶ୍ରେଷ୍ଠ ବୁଅଝିଅମାନେ ଆଦୌ କୌଣସି ଲୁଗାପଟା ପିନ୍ଧନ୍ତି ନାହିଁ ।

ଶୀତକାଳରେ ଉପତ୍ୟକାର ପାହାଡ଼ୀ ପବନରେ ଥଣ୍ଡାର ପ୍ରକୋପ ବହୁତ ବଢ଼ିଯାଏ । ଏଥିପାଇଁ ପ୍ରତ୍ୟେକ ବରହୋରର

ଘର ଭିତରେ ଗର୍ତ୍ତଖୋଳି ନିଆଁ ଉନ୍ଲ ଜଳୁଥାଏ । ସେହି ଉନ୍ଲ-ପାଖରେ ବସି ପରିବାରର ଲୋକେ ଶୀତକଷ୍ଟରୁ ନିଜ ନିଜକୁ ରକ୍ଷା କରନ୍ତି ଏବଂ ଗର୍ତ୍ତରେ ନିଆଁ ଉନ୍ଲଧର ଗୃହପାଖରେ ଶୁଅନ୍ତି ।

ଆମ୍ଭମାନଙ୍କ ପରି ବଉଣ୍ଡୋରମାନଙ୍କର ମଧ୍ୟ ଗୋତ୍ର ଅଛି । ଗଛଲତା ଓ ଜୀବଜନ୍ତୁଙ୍କ ନାମ ଅନୁସାରେ ସେମାନଙ୍କ ଗୋତ୍ର-ସବୁର ନାମକରଣ ହୋଇଛି । ସମାନ ଗୋତ୍ରର ଗୋଷ୍ଠୀମଧ୍ୟରେ ବିବାହ ସମ୍ବନ୍ଧ କରାଯାଏ ନାହିଁ । ସେମାନଙ୍କ ସମାଜରେ ମିତ ବସିବାର ପ୍ରଥା ଅଛି । ଗୋଟିଏ ଠାଣ୍ଡାର କାହାର ସହିତ ଅନ୍ୟ ଦୂରବର୍ତ୍ତୀ ଠାଣ୍ଡାର କୌଣସି ଲୋକର ଭାବ ହେଲେ ଦୁହିଁଙ୍କ ମଧ୍ୟରେ ମିତ୍ରତା ସ୍ଥାପିତ ହୁଏ । ଉଭୟେ ପରସ୍ପରର ମୁଣ୍ଡରେ ଫୁଲ ଖୋଷାଖୋଷି ହୋଇ 'ଫୁଲବନ୍ଧୁ' ହୁଅନ୍ତି ।

ପ୍ରତ୍ୟେକ ଗ୍ରାମରେ ଜଣେ ଗ୍ରାମପତି ଥାଏ । ତାହାକୁ 'ନାୟୁ' କୁହାଯାଏ । କୌଣସି ଗ୍ରାମର ନାୟୁ ମରିଗଲେ ସାଧାରଣତଃ ତାହାର ପରିବାରରୁ ଆଉ ଜଣେ ନାୟୁ ବଛାଯାଏ । ଏଥିପାଇଁ ଦୈବ-ଆଦେଶ ଲୋଡ଼ା ହୁଏ । ପ୍ରତି ଠାଣ୍ଡାରେ ଜଣେ ଲେଖାଏଁ ଗୁଣିଆ ଥାଏ । ତାହାକୁ 'ମାଠୀ' କହନ୍ତି । ତାକୁ ଅନେକପ୍ରକାର ମନ୍ତ୍ର ଓ ଗୁଣିବିଦ୍ୟା ଜଣାଥାଏ । କାହାରିକି ଭୂତ ଲାଗିଲେ ସେ ମନ୍ତ୍ର ପଢ଼ି ତାକୁ ଝାଡ଼ିଦିଏ । ସେଇଥିରେ ଭୂତ ଛାଡ଼ିପଳାଏ । ଅମଙ୍ଗଳ ନ ଘଟିବ ବୋଲି ଲୋକେ ତାଠାରୁ ମନ୍ତୁରା କବଚ ଆଣି ଦେହରେ ବାନ୍ଧନ୍ତି । ସେ ଆଗତ-ଭବିଷ୍ୟ କଥା କହିଦିଏ । ଏହିସବୁ କାରଣରୁ ବଉଣ୍ଡୋରମାନେ ମାଠୀକୁ ସବୁବେଳେ ମୁଣ୍ଡରେ ବସାଇ-ଥାନ୍ତି । ମାଠୀର ମୁଖ ଦେଇ ଭଗବାନ ଆଦେଶ ଦିଅନ୍ତି ବୋଲି ବଉଣ୍ଡୋରମାନଙ୍କର ପୂର୍ବ ବିଶ୍ୱାସ । ତେଣୁ ମାଠୀଦ୍ୱାରା ହିଁ 'ନାୟୁ' ସ୍ଥିର ହୋଇଥାଏ ।

ବରହୋରମାନେ 'ନାୟୁ' ବାଛିବା କଥା ମାଝୀଙ୍କୁ ଜଣାଇଲେ ସେ ପୂଜା ଆରମ୍ଭ କରେ; ତାପରେ ଆଖି ବୁଜି ଧ୍ୟାନରେ ବସିରହେ । ସେତେବେଳେ ତାର ଆଦୌ ବାହ୍ୟଜ୍ଞାନ ରହେ ନାହିଁ । ସେହି ଅବସ୍ଥାରେ ଲୋକେ ତାକୁ ପଚାରନ୍ତି, "ହେ ଭଗବାନ ! ଆମ ଠାଣ୍ଡାର ନାୟୁ ମରିଯାଇଛନ୍ତି । ଏବେ ଆଦେଶ ଦିଅ, ତା ଜାଗାରେ କିଏ ନୂଆ ନାୟୁ ହେବ ।" ମାଝୀମୁହଁରୁ ସଙ୍ଗେ ସଙ୍ଗେ ଉତ୍ତର ଆସିଯାଏ । ତାହା ହିଁ ହୁଏ ଦୈବ-ଆଦେଶ । ମାଝୀ ଯେଉଁ ଲୋକର ନାମ କହିଦିଏ, ସେହି ଲୋକକୁ ସମସ୍ତେ ଠାଣ୍ଡାର ନାୟୁ ବୋଲି ମାନନ୍ତି ।

ଏହି ଉପଲକ୍ଷରେ ବରହୋରମାନେ ଏକ ଉତ୍ସବର ଆୟୋଜନ କରନ୍ତି । ସେମାନେ ଦଳ ବାନ୍ଧି ବଣକୁ ଶିକାର କରି ଯାଆନ୍ତି ଏବଂ ଯେଉଁସବୁ ଜନ୍ତୁ ମାରି ଆଣନ୍ତି, ତହିଁରେ ଭୋଜି ମଉଚ୍ଛବ କରନ୍ତି ।

ନାୟୁଙ୍କୁ ଗ୍ରାମବାସୀମାନେ ଖୁବ୍ ସମ୍ମାନ ଦେଖାନ୍ତି ଏବଂ ତାହାର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରନ୍ତି । ଯେ ଯେଉଁ ଦିନ ଯାହା ଶିକାର କରି ଆଣେ, ତହିଁରୁ କିଛି ନାୟୁଙ୍କୁ ମାନ୍ୟସ୍ୱରୂପ ଦିଏ । ଏଥିଯୋଗୁଁ ନାୟୁର ଘରେ ପ୍ରାୟ ପ୍ରତିଦିନ ମାଂସ ତରକାରି ହୁଏ ।

ହନୁ ବାନର ଶିକାର କରିବାକୁ ବରହୋରମାନେ ଭାରି ଆନନ୍ଦ ପାଆନ୍ତି । ସେମାନେ ହନୁମାଂସର ଅତି ପ୍ରିୟ । ହନୁ ଧରିବାରେ ଜାଲ, ଫାର, ଧନୁ ଓ ଲଠି ବ୍ୟବହୃତ ହୁଏ । ହନୁ ଶିକାରକୁ ସେମାନେ 'ଗିରିସେନ୍ଦ୍ରା' କହନ୍ତି । ବରହୋର ଦଳ ଶିକାରକୁ ଯିବା ପୂର୍ବରୁ ନାୟୁ ପ୍ରଥମେ ମୃଗୟାଦେବୀ ଚଣ୍ଡୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ମନ୍ତ୍ର ପଢ଼ି ପୂଜା ଦିଏ । ବରହୋରମାନଙ୍କର ବିଶ୍ୱାସ,

ଚଣ୍ଡୀପୂଜା ନ କରାଇ ଶିକାର କରିବାକୁ ଗଲେ [illegible] ହୁଏ । ଶିକାରୀମାନେ ଦଳବଦ୍ଧ ହୋଇ ଶିକାର [illegible] ଗାଁରୁ ବାହାରନ୍ତି । ଏଭଳି ଯାତ୍ରାକୁ 'ହସୁମ ସେନ୍ଦ୍ରା' ବୋଲାଯାଏ । ଦଳଟିର ଲୋକେ ଖୁବ୍ ସତର୍କତାର ସହିତ ଯାଉଥାନ୍ତି । ପଥମଧ୍ୟରେ କୌଣସି ଅଶୁଭ ଦ୍ରବ୍ୟ ବା ଅଶୁଭ ଜୀବ ଦେଖିଲେ ଶିକାର ମିଳେ ନାହିଁ ବୋଲି ସେମାନଙ୍କର ଦୃଢ଼ ଧାରଣା ।

ବରହୋରମାନଙ୍କ ଭାଷାରେ ବିବାହକୁ 'ବାପଲ୍' କୁହାଯାଏ । ଅଧିକ ବୟସ ନ ହେଲେ କେହି ବିବାହ କରନ୍ତି ନାହିଁ । ପ୍ରତ୍ୟେକ ବିବାହପ୍ରସଙ୍ଗରେ ଜଣେ ମଧ୍ୟସ୍ଥ ରହେ । ସେ କନ୍ୟାପିତା ସହିତ ସମସ୍ତ ବିଷୟ କଥାବାର୍ତ୍ତା କରି ବିବାହ ତିଥି ଠିକ୍ କରେ । ସେହି ଦିନ ବରକନ୍ୟାଙ୍କର ବିବାହ ହୁଏ । ବରକୁ ସେତେବେଳେ କନ୍ୟାପଣ ଦେବାକୁ ପଡ଼େ । ଏଭଳି ବିବାହର ନାମ 'ସଦର ବାପଲ୍' ।

କନ୍ୟାଘରେ ବିବାହ ଉତ୍ସବ କରାଯାଏ । ବର ତା ପକ୍ଷର ଲୋକମାନଙ୍କ ସହିତ ସେଠାକୁ ଯାଏ । ବିବାହ ଦିନ ବର ଓ କନ୍ୟା ଉଭୟେ ହଳଦିରଙ୍ଗା ବସ୍ତ୍ର ପିନ୍ଧନ୍ତି । 'ବର' ପ୍ରଥମେ 'କନ୍ୟା'ର ମଥାରେ ସିନ୍ଦୂରଟୋପା ଲଗାଇଦିଏ । ତାପରେ କନ୍ୟା ମଧ୍ୟ ବରମଥାରେ ସିନ୍ଦୂର ଦିଏ । ବିବାହ କାର୍ଯ୍ୟ ଶେଷ ହୋଇଗଲେ କନ୍ୟାର ସାଙ୍ଗସାଥୀମାନେ ବରକନ୍ୟାଙ୍କୁ ବେଢ଼ି ଯାଇ ତାଙ୍କଠାରୁ ପଇସା ଆଦାୟ କରନ୍ତି । ବରର ସାନ ଶାଳୀ ଧାଇଁ-ଆସି ଭିଣୋଇର ପାଦ ଧୋଇଦିଏ ଏବଂ ତା ସହିତ ବହୁତ ଥଟ୍ଟା-ମଜଲି କରେ । ସମାଜର ଚଳଣି ଅନୁସାରେ ବରପକ୍ଷର ଲୋକଙ୍କଠାରୁ ତାକୁ କିଛି ବକ୍‌ସିସ୍ ମିଳେ । ଶେଷରେ ବିବାହଭୋଜିର ବ୍ୟବସ୍ଥା ହୁଏ ।

'ଉଡ଼ାଉଡ଼ ବାପଲ୍' ନାମରେ ଆଉ ଏକ ପ୍ରକାର ବିବାହ ସେମାନଙ୍କ ସମାଜରେ ଅଛି । ଏଭଳି ବିବାହ କେବଳ ବର ଓ କନ୍ୟାଙ୍କ ସ୍ୱାଧୀନ ଇଚ୍ଛାରେ ହୋଇଥାଏ । ବାପ ମାଆଙ୍କର ଏଥିରେ ମତ ନ ଥିଲେ ବର ଓ କନ୍ୟା ଆଗରୁ ଷଡଯନ୍ତ୍ର ହୋଇ ଦିନେ ରାତିରେ ଘରଛାଡ଼ି କୌଣସି ଦୂର ଜାଗାକୁ ଚାଲିଯାନ୍ତି । ବର ସେଠାରେ କନ୍ୟାର ମଥାରେ ସିନ୍ଦୂର ଲଗାଇଦିଏ । କନ୍ୟାପିତା ଏ ସମ୍ବାଦ ପାଇ ବରଠାରୁ ପଣଟଙ୍କା ଆଦାୟ କରନ୍ତି । ତାପରେ ଏହି ବିବାହଟିକୁ ସମସ୍ତେ ମାନିଯାନ୍ତି । ଶେଷରେ ଗ୍ରାମବାସୀ ଓ ବନ୍ଧୁବାନ୍ଧବମାନେ ପ୍ରୀତିଭୋଜରେ ଯୋଗ ଦିଅନ୍ତି ।

ଏହାଛଡ଼ା 'ବୋଲେ ବାପଲ୍' ବୋଲି ଅନ୍ୟ ଏକ ରୀତିର ବିବାହ ମଧ୍ୟ ବିରହୋରମାନଙ୍କ ମଧ୍ୟରେ ଦେଖାଯାଏ । କନ୍ୟା ମହୁଲ ଫୁଲର ଭେଟି ନେଇ ବରଘରକୁ ଯାଏ ଏବଂ ଶାଶୁ, ଶଶୁରଙ୍କ ପାଦତଳେ ପଡ଼ି ନିଜ ମନର ଅଭିଳାଷ ପ୍ରକାଶ କରେ । ବରର ପିତାମାତା ଖୁସି ହୋଇ ସେହି କନ୍ୟାଟିକୁ ବୋହୂରୂପେ ଗ୍ରହଣ କରନ୍ତି । ତାହାପରେ ବିବାହ ଉତ୍ସବ ଶେଷ ହୁଏ ।

ଗର୍ଭବତୀ ବିରହୋର ନାରୀମାନେ ଖୁବ୍ ସାବଧାନ ଭାବରେ ଚଳନ୍ତି । ଭୂତପ୍ରେତଙ୍କ ଉପଦ୍ରବରୁ ରକ୍ଷା ପାଇବା ପାଇଁ ସେମାନଙ୍କୁ ବରାବର କୁଡ଼ିଆମଧ୍ୟରେ ରହିବାକୁ ପଡ଼େ । ଶିଶୁ ଜନ୍ମିବା ଦିନଠାରୁ ଏକୋଇଶ ଦିନ ପର୍ଯ୍ୟନ୍ତ ବିରହୋରମାନେ ଜନ୍ମାଶୌଚ ପାଳନ୍ତି । ମାର୍ଗଶୀର ମାସରେ ପୁଅକନ୍ୟାମାନଙ୍କର କାନଫୋଡ଼ା ବା 'କର୍ଣ୍ଣବେଧ' ହୁଏ ।

କୌଣସି ରୋଗୀର ମରିବାବେଳ ପାଖ ହୋଇଗଲେ ସ୍ତ୍ରୀଲୋକେ ଯାଇ ତା ତୁଣ୍ଡରେ ଜଳ ଦିଅନ୍ତି । ତାପରେ ସେମାନେ ରୋଗୀ ଶୋଇଥିବା ଘରର ସମସ୍ତ ଦ୍ୱାର ଖୋଲିଦେଇ ସେଠାରୁ

ବାହାରଯାନ୍ତି । ଏପରିକରିବାରକ ଉଦ୍ଦେଶ୍ୟ ହେଉଛି ଯେ, ଆତ୍ମା ଘରୁ ଛାଡ଼ି ଚାଲିଯିବା ସମୟରେ କୌଣସି ବାଧା ପାଇବ ନାହିଁ । ଅନେକ ସମୟରେ ସ୍ତ୍ରୀମାନେ ରନ୍ଧାଘରୁ ହାଣ୍ଡି, ଆଟିକା ପ୍ରଭୃତି ଆଣି ଅଗଣାରେ ଓଲଟାଇ ରଖିଦିଅନ୍ତି ।

ଶବକୁ ହରିହୋରମାନେ କେତେବେଳେ ଦାହ କରନ୍ତି, କେତେବେଳେ ବା ଗାତ ଖୋଳି ତହିଁରେ ପୋତିଦିଅନ୍ତି । ଶିଶୁ-ମାନଙ୍କୁ କେବେହେଲେ ଦାହ କରାଯାଏ ନାହିଁ । ସତ୍କାର କରିବା ପୂର୍ବରୁ ଶବର ମୁଖ ଦକ୍ଷିଣ ଦିଗକୁ ରଖାଯାଏ । ହରିହୋର ସମାଜରେ ସାତ ଦିନପର୍ଯ୍ୟନ୍ତ ମୃତାଶୌଚ ପାଳିତ ହୁଏ । ଅଶୌଚ-କାଳ କଟିଗଲେ ଗ୍ରାମବାସୀମାନେ ମୁଣ୍ଡ ଲଣ୍ଡା ହୁଅନ୍ତି ଏବଂ ତାପରେ ପାଖ ଝରଣା ବା ନଦୀର ଜଳରେ ସ୍ନାନ କରି ଦେହ ଶୁଦ୍ଧି କରନ୍ତି । ଏହି ଶୁଦ୍ଧି ବା ଶୌଚର ନାମ 'ହୋପୁନ' ।

ହରିହୋରମାନଙ୍କ ମତରେ ମନୁଷ୍ୟର ଦୁଇଟି ଆତ୍ମା— ଗୋଟିଏ ପୁରୁଷ-ଆତ୍ମା ଓ ଅନ୍ୟଟି ସ୍ତ୍ରୀ-ଆତ୍ମା । ଲୋକ ନିଦ୍ରାଗତ ହେଲେ ତାର ପୁରୁଷ-ଆତ୍ମାଟି ଦେହରୁ ବାହାରି ବିଭିନ୍ନ ସ୍ଥାନରେ ବୁଲେ । ସେହି କାରଣରୁ ମନୁଷ୍ୟ ନାନାପ୍ରକାର ସ୍ୱପ୍ନ ଦେଖେ । ପୁରୁଷ-ଆତ୍ମା ବୁଲିଯାଇଥିବାବେଳେ ସ୍ତ୍ରୀ-ଆତ୍ମାଟି ଭିତରେ ଥାଇ ଦେହକୁ ଜଗିରହେ ।

'ସିଂବୋଙ୍ଗା' ହରିହୋରମାନଙ୍କର ଭଗବାନ । ସେମାନେ କହନ୍ତି, ଏହି 'ସିଂବୋଙ୍ଗା' ସମଗ୍ର ପୃଥିବୀର ସୃଷ୍ଟିକର୍ତ୍ତା । ତାଙ୍କର ପ୍ରଭା ସୂର୍ଯ୍ୟକିରଣ ଭଳି ଉଜ୍ଜ୍ୱଳ । ସେ ଦୁଷ୍ଟମାନଙ୍କୁ ଶାସ୍ତି ଦିଅନ୍ତି ଏବଂ ଶିଷ୍ଟ ଲୋକଙ୍କୁ ଆଶୀର୍ବାଦ କରନ୍ତି । ମନୁଷ୍ୟ ତାଙ୍କର ଅନୁଗ୍ରହରୁ ସଂସାରରେ ସୁଖ ଭୋଗ କରେ । ଏଥିପାଇଁ ହରିହୋରମାନେ ଧଳା ମୁରଗୀ ଓ ଧଳା ଛେଳି ବଳି ଦେଇ ସିଂବୋଙ୍ଗାଙ୍କୁ ସନ୍ତୁଷ୍ଟ କରନ୍ତି ।

ସେମାନେ ସିଂବୋଙ୍ଗାଙ୍କ ଛଡ଼ା 'ହନୁମାନବୀର', 'ବାଘବୀର' ପ୍ରଭୃତି ଦେବତା ଓ ଅନ୍ୟାନ୍ୟ ଦେବୀଙ୍କୁ ମଧ୍ୟ ପୂଜା କରିଥାନ୍ତି ।

ବିରହୋରମାନଙ୍କର ଅନେକ ପର୍ବପର୍ବାଣି ଅଛି । ସେଥି-ମଧ୍ୟରେ ଆଷାଢ଼ ମାସର 'ସେସୋନବୋଙ୍ଗା' ପର୍ବ ପ୍ରଧାନ । ଏଥିରେ ସେମାନେ ଦେବୀମାଟୀଙ୍କୁ ମୁର୍ଗୀ ଓ ଅଣ୍ଡା ନୈବେଦ୍ୟ ଦେଇ ପୂଜା କରନ୍ତି । ବିଭିନ୍ନ ଉତ୍ସବ ଓ ପର୍ବରେ ବିରହୋର ସମାଜର ପୁରୁଷ ଓ ସ୍ତ୍ରୀମାନେ ପଚ୍ଚୁ ଭାତର 'ଇଲି' ଖାଇ ଦେହରେ ଖୁବ୍ ଫୁର୍ତ୍ତି ଓ ନିଶା ଆଣନ୍ତି । ସେମାନେ ନାନାପ୍ରକାର ନାଚଗୀତରେ ମାତନ୍ତି ଏବଂ ଖୋଲା ଆକାଶତଳେ ସ୍ୱାଧୀନଭାବରେ ବୁଲି ଜୀବନର ପ୍ରକୃତ ଆନନ୍ଦ ଉପଭୋଗ କରନ୍ତି ।

## ପ୍ରଶ୍ନ

୧ । 'ବିରହୋର' ଶବ୍ଦର ଅର୍ଥ କଣ ?

୨ । 'ଉଥ୍‌ଲୁ' ଓ 'ଯଙ୍ଘୀ' ଏହି ଦୁଇ ଦଳର ଜୀବନଯାତ୍ରାରେ କି ପାର୍ଥକ୍ୟ ଦେଖାଯାଏ ?

୩ । ବିରହୋର ସମାଜର ସ୍ତ୍ରୀ ଓ ପୁରୁଷମାନଙ୍କର ବେଶଭୂଷା ବର୍ଣ୍ଣନା କର ।

୪ । ସେମାନେ କିପରି 'ଫ଼ୁଲ୍‌ବନ୍ଧ୍' ବସନ୍ତି ?

୫ । ବିରହୋରମାନେ କିପରି ଗ୍ରାମର 'ନାୟା' ବାଛନ୍ତି ?

୬ । ବିରହୋର ସମାଜରେ କେତେପ୍ରକାର ବିବାହ ପ୍ରଚଳିତ ଅଛି ? ପ୍ରତ୍ୟେକ ପ୍ରକାର ବିବାହ ବିଷୟ ସଂକ୍ଷେପରେ କହ ।

୭ । 'ଜନ୍ମ' ଓ 'ଅଶୌଚ' ମିଶି 'ଜନ୍ମାଶୌଚ' ଏବଂ 'ମୃତ' ଓ 'ଅଶୌଚ' ମିଶି 'ମୃତାଶୌଚ' ହୋଇଛି । ଏ ଦୁଇ ପ୍ରକାର ଅଶୌଚ ବିଷୟରେ ଯାହା ଜାଣ, କହ ।

———

# ଟୋଡା

ଦକ୍ଷିଣ-ଭାରତର ପୂର୍ବଘାଟ ଓ ପଶ୍ଚିମଘାଟ ପର୍ବତମାଳା ଯେଉଁଠାରେ ମିଳିତ ହୋଇଛି, ସେହି ସ୍ଥାନରେ ନୀଲଗିରି ପାହାଡର ବିସ୍ତୀର୍ଣ୍ଣ ଉପତ୍ୟକା ଶୋଭା ପାଉଛି । ସ୍ଥାନଟି ଅତି ରମଣୀୟ ଓ ସ୍ୱାସ୍ଥ୍ୟକର ।

ଉପତ୍ୟକାଟିର ଅଧିକାଂଶ ସ୍ଥାନ ତୃଣଗୁଳ୍ମରେ ଶ୍ୟାମଳ ଦେଖାଯାଏ । ଗ୍ରୀଷ୍ମକାଳରେ ଉଷ୍ଣତା ବେଶୀ ନ ଥାଏ । ବର୍ଷାଜଳ ପାଇଲେ ଉପତ୍ୟକାଭୂମି ସବୁଜ ଶୋଭାରେ ହସିଉଠେ । ବୃକ୍ଷଲତା ନୂଆ ପତ୍ରରେ ଭରିଯାଏ । ଶୀତଋତୁ ଆସିଲେ ତରୁ, ଲତା ଓ ତୃଣ ସବୁ ଶୀର୍ଣ୍ଣ ହୋଇଯାଏ । ଉପତ୍ୟକାଟିର ସୌନ୍ଦର୍ଯ୍ୟ ମଳିନ ପଡ଼ି-ଆସେ । ନୀଲଗିରି ପାହାଡ଼ର ଏହି ଉପତ୍ୟକା ହିଁ 'ଟୋଡ଼ା'ନାମକ ଏକପ୍ରକାର ଆଦିବାସୀଙ୍କର ରହିବା ସ୍ଥାନ । ସେମାନଙ୍କ ସଂଖ୍ୟା ପ୍ରାୟ ଏକ ହଜାର ।

ଦକ୍ଷିଣ-ଭାରତର ଅଧିବାସୀମାନଙ୍କ ଆକୃତିରେ ସବୁଠି ସାଦୃଶ୍ୟ ଦେଖାଯାଏ । ସେମାନଙ୍କ ଦେହର ବର୍ଣ୍ଣ କଳା, ସମସ୍ତେ ଟିକିଏ ଖର୍ବ; ମାତ୍ର ଟୋଡ଼ାମାନଙ୍କ ଆକୃତି ଏହାଠାରୁ ଭିନ୍ନ । ସେମାନଙ୍କ ବର୍ଣ୍ଣ ଟିକିଏ ସଫା, ଦେହ ମଧ୍ୟ ଦୀର୍ଘ, ନାକ ଲମ୍ବ ଏବଂ ଦେହର କେତେକ ଅବୟବ ଲୋମଶ ।

ନୀଲଗିରି ପାହାଡ଼ର ପାଦଦେଶ ଢାଲୁ ଏବଂ ନିବିଡ଼ ବନରେ ଘେରା । 'ଇରୁଲ' ଓ 'କୁରୁମ୍ବା' ଏହି ଦୁଇ ଜାତିର ଆଦିବାସୀ ସେହି ବନମଧ୍ୟରେ ବାସକରନ୍ତି । କୁରୁମ୍ବାମାନେ ନାନାପ୍ରକାର ଯାଦୁବିଦ୍ୟା ଓ ଗୁଣିଗାରେଡ଼ି ଜାଣନ୍ତି । ସେଥିପାଇଁ ସମସ୍ତେ ସେମାନଙ୍କୁ ଭୟ କରନ୍ତି ।

'ବାଦାଗା' ଓ 'କୋଟା' ନାମରେ ଆଉ ଦୁଇଟି ଜାତିର ଆଦିବାସୀ ଟୋଡ଼ାମାନଙ୍କଠାରୁ ଅଳ୍ପ ଦୂରରେ କୁଡ଼ିଆ କରି ରହିଥାନ୍ତି । ସେମାନଙ୍କ ବ୍ୟବହାର ଓ ସ୍ୱଭାବ ବେଶ୍ ସରଳ । ଟୋଡ଼ାମାନେ ସେମାନଙ୍କ ସହିତ ସଦ୍‌ଭାବ ଓ ବନ୍ଧୁତା ସ୍ଥାପନ କରିଥାନ୍ତି । ଜୀବିକାନିର୍ବାହରେ ଅନେକ ସମୟରେ ସେହି ପଡ଼ୋଶୀ-ମାନଙ୍କର ସାହାଯ୍ୟ ଦରକାର ହୋଇଥାଏ । ଗାଆଁର ଭଲ ମନ୍ଦରେ, ବିବାହଉତ୍ସବ ବା ପର୍ବପର୍ବାଣିରେ ଟୋଡ଼ାମାନେ ସେମାନଙ୍କୁ ନିମନ୍ତ୍ରଣ କରନ୍ତି । ସମସ୍ତେ ଏକତ୍ର ଆମୋଦପ୍ରମୋଦ କରି ପରସ୍ପରର ବନ୍ଧୁତାକୁ ଦୃଢ଼ କରିଥାନ୍ତି ।

ବାଦାଗାମାନଙ୍କର ଏକମାତ୍ର ଜୀବିକା ହେଉଛି କୃଷିକାମ । କୋଟାମାନେ ହାଣ୍ଡିମାଠିଆ, ବାସନକୁସନ ପ୍ରଭୃତି ଗଢ଼ନ୍ତି ଏବଂ ସେଗୁଡ଼ିକ ଦୂର ଗ୍ରାମମାନଙ୍କରେ ବିକି ଯେଉଁ ଟଙ୍କା ରୋଜଗାର କରନ୍ତି, ତହିଁରେ ନିଜ ନିଜର ସଂସାର ଚଳାନ୍ତି । ମଇଁଷି ପାଳନ ଟୋଡ଼ାମାନଙ୍କର ଏକମାତ୍ର ଜୀବିକା । କେବଳ ଏହାରିଦ୍ୱାରା ସେମାନେ ଟଙ୍କା ରୋଜଗାର କରି କୁଟୁମ୍ବ ପୋଷନ୍ତି । କୌଣସି ଜିନିଷ ଆବଶ୍ୟକ ହେଲେ ସେମାନେ ତାହା ପଡ଼ୋଶୀ ବାଦାଗା ବା କୋଟା-ମାନଙ୍କଠାରୁ ଆଣି ତା ବଦଳରେ ଅନ୍ୟ କିଛି ଜିନିଷ ସେମାନଙ୍କୁ ଦିଅନ୍ତି । କେହି କାହାରିକୁ କୌଣସି ଦ୍ରବ୍ୟ ବିକନ୍ତି ନାହିଁ । ଏହି ବଦଳ ପ୍ରଥାଦ୍ୱାରା ଉକ୍ତ ତିନି ସମାଜ ମଧ୍ୟରେ ସହଯୋଗ ମନୋଭାବ ସବୁଦିନେ ରହିଆସିଛି ।

ମହାଭାରତ ପଢ଼ିଲେ ଜଣାଯାଏ, ସେକାଳରେ 'ବିରାଟ' ରାଜାଙ୍କର ହଜାର ହଜାର ଗୋରୁ ଥିଲେ । ଏ ଯୁଗରେ ସେହିପରି ଟୋଡ଼ାମାନଙ୍କର ହଜାର ହଜାର ମଇଁଷି ଅଛନ୍ତି । ସେମାନେ ଏହି ମଇଁଷିମାନଙ୍କ ଦୁଧରୁ ଦହି, ଲହୁଣି, ଛେନା, ଘିଅ ପ୍ରଭୃତି ତିଆରି

କରନ୍ତି । ନିଜ କୁଟୁମ୍ବ ଲୋକଙ୍କ ଖାଇବା ପାଇଁ ସେଥିରୁ ଯଥେଷ୍ଟ ପରିମାଣରେ ରଖି ବାକିତକ ନେଇ ସହର ଓ ଗ୍ରାମମାନଙ୍କରେ ବିକନ୍ତି । ସେହି ଟଙ୍କାରେ ସେମାନେ ଯାବତୀୟ ଖାଦ୍ୟଦ୍ରବ୍ୟ ଓ



[ ମଇଁଷିଙ୍କ ପାଖରେ ଟୋଡ଼ା ବାଳକ ]

ଅନ୍ୟାନ୍ୟ ସରଞ୍ଜାମ କିଣନ୍ତି । କୋଟା ଓ ବାଡାଗାମାନଙ୍କୁ ମଧ୍ୟ ଅନେକ ସମୟରେ ଦହି, ଘିଅ ଆଦି ଦେଇ ସେମାନଙ୍କଠାରୁ ଦରକାରୀ ଜିନିଷ ବଦଳ ଆଣନ୍ତି ।

ଟୋଡ଼ାମାନେ କୃଷିକାର୍ଯ୍ୟରେ ପଶିବାକୁ ମୋଟେ ଇଚ୍ଛା କରନ୍ତି ନାହିଁ । ଶିକାର କରିବା ମଧ୍ୟ ଦରକାର ପଡ଼େ ନାହିଁ । ଚାଉଳକୁ ଦୁଧରେ ସିଝାଇ ସେମାନେ ଖାଆନ୍ତି । ଏହାହିଁ ସେମାନଙ୍କର ପ୍ରଧାନ ଖାଦ୍ୟ । ବେଳେବେଳେ ଗୁଡ଼ ପକାଇ ସେମାନେ ଦୁଧର ପାୟସ ତିଆରି କରନ୍ତି ଏବଂ ଇଚ୍ଛାହେଲେ ଦିନେ ଦିନେ ଶାକପରିବାର ତରକାରି ମଧ୍ୟ ଖାଆନ୍ତି । ଉତ୍ସବବେଳେ ଓ ପର୍ବପର୍ବାଣୀରେ

ସେମାନଙ୍କ ଘରେ ମଇଁଷି ବା ସମ୍ବରର ମାଂସ ରନ୍ଧାଯାଏ । ଏହି ଦୁଇ ପ୍ରକାର ମାଂସ ଛଡ଼ା ଅନ୍ୟ କୌଣସି ପଶୁ ବା ପକ୍ଷୀର ମାଂସ ଛୁଇଁବା ସୁଦ୍ଧା ସେମାନଙ୍କ ସମାଜରେ ମନା ।

ଟୋଡ଼ାମାନଙ୍କ ଘରଗୁଡ଼ିକ ନଳ ଭଳି ବେଶ୍ ଲମ୍ବା ଆଉ ପରସ୍ପର ଲଗାଲଗି । ବଖରାସବୁର ମେଜିଆ ଅଗଣାଠାରୁ ସାମାନ୍ୟ ଉଚ୍ଚ । କୌଣସି ଘରେ ଝରକା ନ ଥାଏ । ଦ୍ୱାରଗୁଡ଼ିକ ଖୁବ୍ ଛୋଟ ଓ ଅର୍ଦ୍ଧଗୋଲାକୃତି । କେତେକ ଟୋଡ଼ାଗ୍ରାମର ଘରମାନ ଗୋଲ ଆକାରରେ ତିଆରି ହୋଇଥିବାର ଦେଖାଯାଏ ।

ସେମାନେ ଲମ୍ବା ଘରଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରି-ଦେଇଥାନ୍ତି । ଏପରି କରିବାଦ୍ୱାରା ପରିବାରର ଚଳିବା ପାଇଁ ଓ ଘରଧନ୍ଦା କରିବା ପାଇଁ ସୁବିଧା ହୁଏ । ଗୋଟିଏ ଭାଗରେ ଘିଅ ତିଆରି କରିବାର ହାଣ୍ଡି, ଦହି ମୋହିଁବାର ହାଣ୍ଡି, ଦହିଖିଆ ଆଦି ନିତ୍ୟ-କାରବାରି ଉପକରଣ ରହିଥାଏ । କେବଳ ପୁରୁଷମାନେ ସେହି ବଖରାରେ କାରବାର କରନ୍ତି । ସ୍ତ୍ରୀଲୋକମାନଙ୍କର ତାହା ମଧ୍ୟକୁ ଯିବା ଆଦୌ ଦରକାର ହୁଏ ନାହିଁ । ସେମାନେ ଅନ୍ୟ ଭାଗର ବଖରାଟିକୁ ନିଜ କାମରେ ଲଗାନ୍ତି । ରନ୍ଧାବଢ଼ାଠାରୁ ଆରମ୍ଭ କରି ଖାଇବାକୁ ଦେବାପର୍ଯ୍ୟନ୍ତ ସବୁ କାମ ସେହି ବଖରାରେ କରନ୍ତି ।

ଆଗେ ଟୋଡ଼ାମାନେ କାଠରେ କାଠ ଘଷି ନିଆଁ ବାହାର କରୁଥିଲେ, ଅଣ୍ଟାଚାରିପାଖରେ ତାଳପତ୍ର ଗୁଡ଼ାଉଥିଲେ । ଏବେ ସେସବୁ ପୁରୁଣା ରୀତି ଆଉ ନାହିଁ, କି ପୁରୁଷ କି ସ୍ତ୍ରୀ ସମସ୍ତେ ଲୁଗା ପିନ୍ଧିଲେଣି । ଧୋତି ବା ଶାଢ଼ୀ ସେମାନେ ନିଜ ହାତରେ ବୁଣନ୍ତି ନାହିଁ, ଗ୍ରାମ ବା ବଜାରରୁ କିଣିଆଣନ୍ତି । ପୁରୁଷମାନେ ଧଡ଼ିଲୁଗା ଓ ସ୍ତ୍ରୀଲୋକମାନେ ଧଡ଼ିଶାଢ଼ୀ ପିନ୍ଧନ୍ତି । ଅଳଙ୍କାର ପ୍ରତି

ନାଗମାନଙ୍କର ବେଶ୍ ସଉକ ଅଛି । ସେମାନେ ସୁନାରୂପାର ଗହଣାରେ ଦେହ ସଜାନ୍ତି ଏବଂ ପ୍ରାୟ ସବୁ ଅଙ୍ଗରେ ଖଞ୍ଜା କୁଟାନ୍ତି । କାନରେ ଗଣ୍ଡିଆ, ନାକରେ ନୋଲକ, ହାତରେ ବାଲା, ବେକରେ ହାର ପିନ୍ଧନ୍ତି ।

ପୁରୁଷଙ୍କ ଉପରେ ମଇଁଷିମାନଙ୍କର ସବୁ ଭାର ଥାଏ । ନାରୀମାନେ ଆଦୌ ସେମାନଙ୍କ ତତ୍ତ୍ୱ ନଅନ୍ତି ନାହିଁ । ପୁରୁଷମାନେ ସକାଳ ହେଲେ ମଇଁଷିଙ୍କଠାରୁ ଦୁଧ ଦୁହିଁନ୍ତି । ତାପରେ ଗୋଠ ଘେନ ବାହାରିଯାଆନ୍ତି । ଗୋଠର ମଇଁଷିମାନେ ମନଇଚ୍ଛା ଘାସଭୂଇଁରେ ଏଣେତେଣେ ଚରିବୁଲନ୍ତି । ସୂର୍ଯ୍ୟକରଣ କ୍ରମେ କମିଯାଇ ପଶ୍ଚିମ ଆକାଶତଳେ ଲୁଚିଯିବାକୁ ବସିଲେ ଟୋଡ଼ାମାନେ ଗୋଠ ଘେନି ଘରକୁ ଫେରନ୍ତି । ସନ୍ଧ୍ୟାରେ ଦୁଧଦୁହାଁ କାର୍ଯ୍ୟ ସରିଗଲେ ମଇଁଷି-ଦଳକୁ ଗୁହାଳରେ ବନ୍ଦ କରି ରଖନ୍ତି ।

'ଟାରଥାରଲ' ଓ 'ଟିଭାଲିଅଲ' ନାମରେ ଟୋଡ଼ାମାନଙ୍କର ଦୁଇଟି ଦଳ ଅଛି । ଏହି ଦୁଇ ଦଳ ମଧ୍ୟରେ ବିବାହ ସମ୍ବନ୍ଧ କରାଯାଏ ନାହିଁ । ଟାରଥାରଲମାନଙ୍କର ଗୋତ୍ରସଂଖ୍ୟା ବାରଟି ଏବଂ ଟିଭାଲିଅଲମାନଙ୍କର ଛଅଟି । ଟାରଥାରଲମାନେ ନିଜ ଜାତିର ଖୁବ୍ ଟେକ କରନ୍ତି ଏବଂ ସେଥିପାଇଁ ଟିଭାଲିଅଲମାନଙ୍କୁ ଟିକିଏ ହୀନ ଆଖିରେ ଦେଖନ୍ତି । ପ୍ରତ୍ୟେକ ଗୋତ୍ରର ଲୋକ ଗୋଟିଏ ଗୋଟିଏ ଗ୍ରାମରେ ଏକାଠି ରହିଥାନ୍ତି । ରହିବା ଜାଗାରେ ଘାସର ଅଭାବ ଘଟିଲେ ସେମାନେ ଅନ୍ୟ ସ୍ଥାନକୁ ଚାଲିଯାଇ ସେଠାରେ ପୁଣି ଗ୍ରାମଟିଏ ଗଢ଼ନ୍ତି ।

ଟୋଡ଼ାସମାଜରେ ପଞ୍ଚାୟତପ୍ରଥା ଏପର୍ଯ୍ୟନ୍ତ ରହିଛି । ପଞ୍ଚାୟତକୁ ସେମାନେ 'ନୟାମ' କହନ୍ତି । 'ନ୍ୟାୟ' ଶବ୍ଦ ସହିତ ଏହି 'ନୟାମ' ଶବ୍ଦର ସମ୍ପର୍କ ଥିଲାପରି ଜଣାଯାଏ । ଟାରଥାରଲ ଦଳରୁ

ତିନି ଜଣ, ଟିଭ୍ରଲିଅଲ ଦଳରୁ ଜଣେ ଓ ବାଦାଗାମାନଙ୍କ ମଧ୍ୟରୁ ଜଣେ ବହୁଯାତ୍ରି ଏବଂ ସେହି ପାଞ୍ଚ ଜଣଙ୍କଦ୍ୱାରା ପଞ୍ଚାୟତ ଗଢ଼ାହୁଏ । କୌଣସି ଦଳମଧ୍ୟରେ ବିବାଦ ପଡ଼ିଲେ ଏହି ପଞ୍ଚାୟତ ତାହା ନିଷ୍ପତ୍ତି କରେ । କୌଣସି ଉତ୍ସବ କରିବା ପୂର୍ବରୁ ମଧ୍ୟ ପଞ୍ଚାୟତର ମଞ୍ଜୁରି ଦରକାର ହୋଇଥାଏ । ଏହି ପଞ୍ଚାୟତର କଡ଼ା ନଜର ଯୋଗୁଁ ଟୋଡ଼ାସମାଜରେ ଚୋରି ହେବାର ଶୁଣାଯାଏ ନାହିଁ । ସେମାନେ ନରହତ୍ୟାକୁ ସବୁଠାରୁ ଘୃଣା କରନ୍ତି ।

ସେମାନଙ୍କ ସମାଜରେ ଆଉ ଗୋଟିଏ ବିଶେଷତ୍ୱ ଦେଖାଯାଏ । ବାପା ମରିଗଲେ ପୁଅ ସମ୍ପତ୍ତିର ମାଲିକ ହୁଏ ସତ; କିନ୍ତୁ ସବୁ ସମ୍ପତ୍ତିର ନୁହେଁ । ହାଣ୍ଡିକୁଣ୍ଡେଇ, ବାସନକୁସନ, ଗହଣାଗାଣ୍ଠି, ଲୁଗାପଟା, ମଇଁଷି, ଏଗୁଡ଼ିକ ତାର ଅଜିଲା ସମ୍ପତ୍ତି ହୁଏ । ଘର-ବାଡ଼ି, ମଇଁଷିଗୁହାଳ ପ୍ରଭୃତି ଉପରେ ସେହି ଗୋଷ୍ଠୀର ସମସ୍ତ ଲୋକଙ୍କର ଅଧିକାର ରହେ । ତେଣୁ କୌଣସି ଜଣେ ଲୋକ ଏସବୁକୁ ବିକାକିଣା କରିପାରେ ନାହିଁ । ଭାଇ ଭାଇଙ୍କ ମଧ୍ୟରେ ସମ୍ପତ୍ତିବଣ୍ଟାବେଳେ ପଞ୍ଚାୟତର ପାଞ୍ଚ ଜଣଯାକ ସଭ୍ୟ ଉପସ୍ଥିତ ରହନ୍ତି । ବଡ଼ଭାଇକୁ ଓ ସାନଭାଇକୁ ଗୋଟିଏ ଲେଖାଏଁ ଅଧିକା ମଇଁଷି ଭାଗ ମିଳିଥାଏ । ଏହାଛଡ଼ା ଅନ୍ୟ ସମସ୍ତ ଦ୍ରବ୍ୟ ସବୁ ଭାଇ ସମାନଭାବରେ ବାଣ୍ଟିନିଅନ୍ତି ।

ଟୋଡ଼ାମାନଙ୍କର ବିବାହପ୍ରଥା ବଡ଼ ଅଦ୍ଭୁତ । ଆମ୍ଭମାନଙ୍କ ସମାଜର କେତେକ ଜାତିରେ ବହୁପତ୍ନୀ ବିବାହ ପ୍ରଚଳିତ ଅଛି । ଟୋଡ଼ାସମାଜରେ ଠିକ୍ ଏହାର ବିପରୀତ । ସେମାନେ ବହୁପତି ବିବାହର ପକ୍ଷପାତୀ । ତେଣୁ ସେହି ସମାଜରେ ଜଣେ ସ୍ତ୍ରୀର ଏକାଧିକ ସ୍ୱାମୀ ବରାବର ଦେଖାଯାଏ । ଏହା ପାଣ୍ଡବ ପାଞ୍ଚ ଭାଇଙ୍କର ଦ୍ରୌପଦୀଙ୍କୁ ବିବାହ କରିବା ପରି । ବଡ଼ଭାଇ ଯେଉଁ ବାଳିକାକୁ

ବିବାହ କରେ, ସମସ୍ତ ସାନଭାଇଙ୍କର ମଧ୍ୟ ସେହି ବାଳକାଟି ସ୍ତ୍ରୀ ହୋଇଯାଏ । ଅନେକ ସମୟରେ ସବା ସାନଭାଇର ବୟସ ଉକ୍ତ ବାଳକାଟିର ବୟସଠାରୁ କମ୍ ହେବାର ଦେଖାଯାଏ ।

ଟୋଡ଼ା ସମାଜରେ ପୁରୁଷସଂଖ୍ୟା ତୁଳନାରେ ସ୍ତ୍ରୀସଂଖ୍ୟା ବହୁତ ଅଳ୍ପ । ସେଥିପାଇଁ ବହୁ କାଳରୁ ସେମାନେ ବହୁପତି ବିବାହ ଚଳାଇ ସ୍ତ୍ରୀଅଭାବଜନିତ ଅସୁବିଧା ଦୂର କରିଛନ୍ତି ।

ଏପ୍ରକାର ବିବାହ ଯୋଗୁଁ ବେଳେବେଳେ ବିଭ୍ରାଟ ଘଟିଥାଏ । ସ୍ୱାମୀମାନେ ଯଦି ଗୋଟିଏ ଘରର ନ ହୋଇ ଅଲଗା ଅଲଗା ଘରର ବା ଅଲଗା ଅଲଗା ଗ୍ରାମର ହୋଇଥାନ୍ତି, ତାହା-ହେଲେ ବଧୂର ସ୍ତ୍ରୀଟିକୁ ଜଣ ଜଣ କରି ପ୍ରତ୍ୟେକ ସ୍ୱାମୀର ଘରକୁ ଯାଇ ସେଠାରେ କିଛି କିଛି ସମୟ ରହିବାକୁ ପଡ଼େ । ଏହି ଅସୁବିଧା ଦେଖି ଟୋଡ଼ାମାନେ ପୂର୍ବର ବହୁପତି ବିବାହ ନିୟମକୁ କୋହଳ କରିଦେଲେଣି । ଆଜିକାଲି ମଧ୍ୟ ସ୍ତ୍ରୀଙ୍କ ସଂଖ୍ୟା ଆଗ ଅପେକ୍ଷା ବଢ଼ିଯାଇଛି । ତେଣୁ ସ୍ତ୍ରୀମାନେ ଗୋଟିଏ ଗୋଟିଏ ସ୍ୱାମୀର ସ୍ତ୍ରୀ ହେବାପାଇଁ ସୁବିଧା ପାଇଲେଣି ।

ଟୋଡ଼ାମାନେ ମଲାଲୋକଙ୍କର ଶବକୁ ପୋଡ଼ନ୍ତି । ଭିନ୍ନ ଭିନ୍ନ ଗୋଷ୍ଠୀର ଲୋକଙ୍କ ପାଇଁ ଭିନ୍ନ ଭିନ୍ନ ମଶାଣି ଥାଏ । ଏକା ଗୋଷ୍ଠୀର ଯେତେ ଲୋକ ମରନ୍ତି, ସମସ୍ତେ ଗୋଟିଏ ମଶାଣିରେ ପୋଡ଼ା ହୁଅନ୍ତି । ପ୍ରତ୍ୟେକ ମଶାଣିର ପୁଣି ଦୁଇଟି ଭାଗ । ଗୋଟିଏ ଭାଗରେ ପୁରୁଷମାନଙ୍କର ଏବଂ ଅନ୍ୟ ଭାଗଟିରେ ନାରୀମାନଙ୍କର ଶବ ପୋଡ଼ା ହେବା ପାଇଁ ସ୍ୱତନ୍ତ୍ର ବନ୍ଦୋବସ୍ତ ରହିଥାଏ ।

ମୃତଦେହକୁ ଟୋଡ଼ାମାନେ ଲୁଗା ଓ ଅଳଙ୍କାରରେ ସଜାଇ ମଶାଣିକି ନେଇଯାନ୍ତି । ଚିତାରେ ଚଢ଼ାଇବା ପୂର୍ବରୁ ତାହାର ମୁଣ୍ଡରୁ କେରାଏ ବାଳ କାଟିଆଣି ରଖନ୍ତି । ମୁର୍ଦ୍ଦାର ନିକଟରେ

ମଇଁଷି ବଳି ଦିଆଯାଏ । ଟୋଡ଼ାମାନଙ୍କର ଧାରଣା, ମୃତଲୋକର ଆତ୍ମା ଅନ୍ୟ ଜଗତରେ ବୁଲୁଥିବାବେଳେ ଏହି ମଇଁଷି ତାହାର କାର୍ଯ୍ୟରେ ଲାଗେ । ଏହାପରେ ଚିତା ପ୍ରସ୍ତୁତ କରାଯାଇ ତହିଁରେ ଶବକୁ ଶୁଆଇଦେବାକୁ ହୁଏ । ଶେଷରେ ଚିତା ଉପରେ ଘିଅ ଢାଳିଦେଲେ ନିଆଁ ହୁତ୍‌ହୁତ୍ ହୋଇ ଜଳିଉଠେ ।

କେତେକ ମାସ ପରେ ଟୋଡ଼ାମାନେ ମଶାଣିକି ଯାଆନ୍ତି ଏବଂ ଶବର ଅସ୍ଥି ସଂଗ୍ରହ କରନ୍ତି । ପୂର୍ବରୁ ରଖାଯାଇଥିବା ବାଳ ଓ ଏହି ଅସ୍ଥି ଉଭୟଙ୍କୁ ନେଇ ପୁଣି ଚିତା ସଜାନ୍ତି । ଏଥର ମଧ୍ୟ ମଇଁଷି ବଳି ଦେବାକୁ ହୁଏ ।

ଟୋଡ଼ାମାନଙ୍କର ବିଶ୍ୱାସ ଯେ, ଆତ୍ମା ମୃତ ବ୍ୟକ୍ତିର ପିଣ୍ଡ ଛାଡ଼ି ଚାଲିଯିବା ପରେ ଖୁବ୍ ଆନନ୍ଦରେ ରହେ । ତାକୁ କୌଣସି ଦୁଃଖଯନ୍ତ୍ରଣା ଆଉ ଭୋଗ କରିବାକୁ ପଡ଼େ ନାହିଁ । କିଛି କାଳ ସ୍ୱର୍ଗରେ ବିଚରଣ କରିବା ପରେ ଆତ୍ମା ପୁଣି ଏକ ଶରୀର ଆଶ୍ରା କରି ପୃଥିବୀକୁ ଆସେ ।

ମନ୍ତ୍ରରେ ଟୋଡ଼ାମାନଙ୍କର ଖୁବ୍ ଆସ୍ଥା ଅଛି । ଝଡ଼ାଫୁଙ୍କାଦ୍ୱାରା ଅନେକ ରୋଗ ଭଲ ହୋଇଯାଏ ବୋଲି ସେମାନେ ଭାବନ୍ତି । ସେମାନଙ୍କର ନାନା ଦେବାଦେବୀ ଅଛନ୍ତି । ସେଥିମଧ୍ୟରୁ ପ୍ରଧାନ ଦେବୀଙ୍କର ନାମ 'ଟିଏକିର୍'। ସେ ସମାଜର ସବୁପ୍ରକାର ବିଧି-ବିଧାନ ପ୍ରଥମେ ସୃଷ୍ଟି କରିଥିଲେ ବୋଲି ଟୋଡ଼ାମାନେ କହନ୍ତି । ଭୂତପ୍ରେତରେ ମଧ୍ୟ ସେମାନଙ୍କର ବେଶ୍ ବିଶ୍ୱାସ ଥାଏ । ଟୋଡ଼ାମାନଙ୍କ ମତରେ ଏକପ୍ରକାର ଡାଆଣୀ ଅଛନ୍ତି; ସେମାନେ ବହୁତ ଅମଙ୍ଗଳ ଘଟାନ୍ତି । ଏଥିପାଇଁ ନାନାପ୍ରକାର ପୂଜା କରି ଓ ପଶାଭୋଗ ଦେଇ ଟୋଡ଼ାମାନେ ସେହି ଡାଆଣୀମାନଙ୍କୁ ଶାନ୍ତ କରନ୍ତି ।

ଯେତେ ଜାତିର ଆଦିବାସୀ ଭାରତରେ ଦେଖାଯାନ୍ତି, ସେମାନଙ୍କ ମଧ୍ୟରେ ଚୋଡ଼ା ସମାଜର ସ୍ଥାନ ଖୁବ୍ ଉଚ୍ଚରେ ବୋଲି ସ୍ୱୀକାର କରିବାକୁ ହେବ । ସେମାନଙ୍କର ସରଳ ଜୀବନଯାପନ, ହିଂସାଶୂନ୍ୟ ସ୍ୱଭାବ ଓ ପରସ୍ପର ମଧ୍ୟରେ ସ୍ନେହବନ୍ଧନ ସଭ୍ୟ ସମାଜର ପକ୍ଷେ ଅନୁକରଣ କରିବାର କଥା ।

## ପ୍ରଶ୍ନ

୧ । ବାଦାଗା ଓ କୋଟା ଆଦିବାସୀଙ୍କ ଜୀବିକା ମଧ୍ୟରେ କି ପ୍ରଭେଦ ଦେଖାଯାଏ ?

୨ । ଚୋଡ଼ାମାନଙ୍କର ଘର ଓ ବେଶଭୂଷା ବିଷୟରେ ଯାହା ଜାଣିଲ, ବର୍ଣ୍ଣନ କର ।

୩ । ସେମାନଙ୍କ ସମାଜରେ ପଞ୍ଚାୟତର କାର୍ଯ୍ୟ କିପରି ହୁଏ, କହ ।

୪ । ଚୋଡ଼ା ସମାଜର ବହୁପତି ବିବାହର କିଣ ଫଳ ହୋଇଛି ?

୫ । ଚୋଡ଼ାମାନଙ୍କ ଦେହାକାର ବିଷୟରେ ତୁମ ସାନଭଉଣୀ ପାଖକୁ ଚିଠିଏ ଲେଖ ।

୬ । ସେମାନଙ୍କୁ କାହିଁକି ଅନ୍ୟ ଶ୍ରେଣୀର ଆଦିବାସୀଙ୍କଠାରୁ ଉଚ୍ଚ ସ୍ଥାନ ଦିଆଯାଏ ?

୭ । 'ଗଢଣାଗାଣ୍ଡି' 'ବାସନକୁସନ' ଓ 'ଲୁଗାପଟା'—ଏହି ଶବ୍ଦଗୁଡ଼ିକର 'ଗାଣ୍ଡି' 'କୁସନ' ଓ 'ପଟା'ର କୌଣସି ବିଶେଷ ଅର୍ଥ ନାହିଁ । ଏହିପରି ନିରର୍ଥକ ଶବ୍ଦାଂଶଯୁକ୍ତ ଆଉ ପାଞ୍ଚଟି ଶବ୍ଦ କହ ।

# ନାଗା

ମସ୍ତକରେ ବରଫର ରୂପେଲି ମୁକୁଟ ପିନ୍ଧି ଭାରତଭୂମିର ଅଭେଦ୍ୟ ଦୁର୍ଗ ପରି ଗିରିଶ୍ରେଷ୍ଠ ହିମାଳୟ କେଉଁ ଆଦିମ ଯୁଗରୁ ଠିଆ ହୋଇ ରହିଛି । ତାହାର ପାଦତଳେ ଆସାମ ରାଜ୍ୟ । ଏହି ଆସାମର ସମଗ୍ର ଉତ୍ତର-ପୂର୍ବ ଅଞ୍ଚଳରେ ହିମାଳୟର ପୁଅନାତିପରି କେତେ ଛୋଟ ଛୋଟ ପାହାଡ଼ ଶୋଭା ପାଉଛି । ସେହି ପାହାଡ଼-ମାନଙ୍କ ମଧ୍ୟରେ ଖାସିଆ, କାଚ୍ଛାଡ଼, ଲୁସାଇ, ଜୟନ୍ତିଆ ଓ ନାଗା ପ୍ରଧାନ ।

ଏହିସବୁ ପାହାଡ଼ଭୂଇଁରେ ଅନେକ ନଦୀ ବହିଯାଇଛି । ସେମାନଙ୍କ ଦୁଇ କୂଳରେ ଧାଡ଼ି ଧାଡ଼ି ହୋଇ ଶୋଭା ପାଏ ଶାଳ, ପାଇନ୍‌ର ଉଚ୍ଚ ଉଚ୍ଚ ଗଛ, କେଉଁ କେଉଁଠି ବା ବେତ ବାଉଁଶର ଗହଳ କୁଞ୍ଜ । ସମୁଦାୟ ଅଞ୍ଚଳଟିକୁ ବୃତ୍ତପରି ବେଢ଼ି ରହିଛି ଘୋଟ ବଡ଼ ବଡ଼ ଜଙ୍ଗଲ । ତାହା ମଧ୍ୟରେ ବିଭିନ୍ନ ବୃକ୍ଷରେ ବିଭିନ୍ନ ଫୁଲ ଫୁଟେ । ଚିତା, ଭାଲୁ, ବାଘ, ହରିଣ, ଅରଣାମଇଁଷିରେ ସେଗୁଡ଼ିକର ନିବିଡ଼ ଗର୍ଭ ପୂରିରହିଥାଏ ।

ଉଲ୍ଲିଖିତ ପାହାଡ଼ମାନଙ୍କ ମଧ୍ୟରୁ ନାଗା ପାହାଡ଼ରେ ବାସ କରନ୍ତି 'ନାଗା' ନାମକ ଭୀଷଣ ପ୍ରକୃତିର ଆଦିବାସୀ । ସେମାନଙ୍କ ସମ୍ପ୍ରଦାୟଟି ଅତି ବଡ଼ ଥିବାରୁ ତାହା ନାନା ଶ୍ରେଣୀରେ ବିଭକ୍ତ ହୋଇ ଆଓ, ଅଙ୍ଗାମୀ, କନ୍ୟାକ, କାବୁଇ, ରେଂମା, ଲୋଠା ପ୍ରଭୃତି ବିଭିନ୍ନ ନାମରେ ପରିଚିତ । ଏହି ସମସ୍ତ ଶ୍ରେଣୀର ନାଗା-ମାନଙ୍କ ଆକୃତିପ୍ରକୃତି, ଆଚାରବ୍ୟବହାର ଆଦିରେ ସାମ୍ୟ ଥିଲେହେଁ କେତେକ ସ୍ଥାନରେ ବୈଷମ୍ୟ ମଧ୍ୟ ଦେଖାଯାଏ । ନାଗାମାନଙ୍କ ସଂଖ୍ୟା ତିନି ଲକ୍ଷରୁ ଅଧିକ ।

ସାଧାରଣତଃ ନାଗାମାନଙ୍କ ବର୍ଣ୍ଣ କଳା, କେଉଁ କେଉଁଠି ବା ସାମାନ୍ୟ ହଳଦିଆମିଶା । ଅଧିକାଂଶ ନାଗା ଡେଙ୍ଗା । କାହାର ମୁହଁରେ ପ୍ରାୟ ନିଶଦାଢ଼ି ଦେଖାଯାଏ ନାହିଁ । ଯୌବନ ସମୟରେ ନିଶଦାଢ଼ି ଗଜୁରିବାମାତ୍ରେ ସେମାନେ ତାହା ଗୋଟି ଗୋଟି କରି ଉପାଡ଼ି ଦେଇଥାନ୍ତି ।

ପାହାଡ଼ର ମଧ୍ୟଭାଗରେ ନାଗାମାନଙ୍କର ଗ୍ରାମ । କେତେକ ନାଗା ପାହାଡ଼-ଶିଖରେ ମଧ୍ୟ ବାସ କରିଥାନ୍ତି । ପାଞ୍ଚ ଶହଠାରୁ ସାତ ଶହପର୍ଯ୍ୟନ୍ତ ଲୋକ ଗୋଟିଏ ଗୋଟିଏ ଗ୍ରାମରେ ଥିବାର ଦେଖାଯାଏ । ପ୍ରାୟ ଅଧିକାଂଶ ଘର ଦୋମହଲା । ବାଉଁଶପାତିଆର ଛାଟିରେ ସେଗୁଡ଼ିକ ଛପର ହୋଇଥାଏ । କାନ୍ଥମାନ କାଠ ବା ବାଉଁଶରେ ତିଆରି । କେତେକ ନାଗା ଯୁଦ୍ଧର ଚିହ୍ନସ୍ୱରୂପ ଘରର ମଥାନ ଉପରେ ଅରଣାମଇଁଷିର ତୀକ୍ଷ୍ଣ ଶୃଙ୍ଗ ଠିଆ ବାଗରେ ଖୋଞ୍ଚିଥାନ୍ତି । ଗାଆଁର ଦାଣ୍ଡଟି ବେଶ୍ ଚଉଡ଼ା । ତାହାର ଦୁଇ ପାଖରେ ଘରଗୁଡ଼ିକ ଲଗାଲଗି ହୋଇ ଶୋଭା ପାଉଥାଏ ।

ଗାଆଁଦାଣ୍ଡର ଠିକ୍ ମଝିରେ ଗୋଟିଏ ଆଡ୍ଡାଘର ଥାଏ । ସେଠାରେ ଯୁବକମାନେ ଏକାଠି ବସି ନାନା ଆମୋଦପ୍ରମୋଦ କରନ୍ତି । ଏହି ଆଡ୍ଡାଘରକୁ ଆମ୍ଭମାନଙ୍କର 'କ୍ଲବ'ଘର ସହିତ ତୁଳନା କରାଯାଇପାରେ । ନାଗା ଯୁବକମାନଙ୍କୁ 'ମୋରୁଂ' ବୋଲାଯାଏ ।

ଆଡ୍ଡାଘର ପାଖରେ ଗୋଟାଏ ପ୍ରକାଣ୍ଡ ଗଛ ଉପରେ ସୁନ୍ଦର ମଞ୍ଚାଟିଏ ତିଆରି ହୋଇଥାଏ । କେତେକ ନାଗା ତା ଉପରେ ବସି ପାଳି ଅନୁସାରେ ପହରା ଦିଅନ୍ତି । କାଳେ କୌଣସି ଶତ୍ରୁଦଳ ହଠାତ୍ ଆସି ଗ୍ରାମ ଉପରେ ଆକ୍ରମଣ କରିବ, ଏଥିପାଇଁ ସେହି

ପ୍ରହରୀମାନେ ମଞ୍ଚାରେ ଥାଇ ଚୁଣେଆଡ଼କୁ ବରାବର ଆଖି ପକାଉ-ଥାନ୍ତି । ସେମାନଙ୍କ ପାଖରେ ଗୋଟିଏ ମସ୍ତବଡ଼ ନାଗରା ଥାଏ । ତାହାର ଲମ୍ବା ପଚାଶ ହାତରୁ କମ୍ ନୁହେଁ । ବିପଦର ସୂଚନା ପାଇବାମାତ୍ରେ ପ୍ରହରୀମାନେ ପ୍ରଚଣ୍ଡ ଶବ୍ଦରେ ନାଗରା ପିଟିବାକୁ ଲାଗନ୍ତି । ସଙ୍ଗେ ସଙ୍ଗେ ଗ୍ରାମବାସୀମାନେ ହୁସିଆର ହୋଇଯାଇ ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବାପାଇଁ ତିଆର ହୋଇପଡ଼ନ୍ତି ।

ନାଗା ସମାଜର ପୁରୁଷମାନେ କେବଳ କମରରେ କନା-ଖଣ୍ଡିଏ ବାନ୍ଧିଥାନ୍ତି ଏବଂ କାନରେ କାନଫୁଲ ପିନ୍ଧିଥାନ୍ତି । ନାରୀମାନେ ଛାତିଠାରୁ ଆଣ୍ଠୁପର୍ଯ୍ୟନ୍ତ ଦେହର ଅଂଶକୁ ଛୋଟିଆ ଶାଢୀଟିରେ ଘୋଡ଼ାଇଥାନ୍ତି । ଏମାନେ ହାତରେ ମୋଟା ଚୁଡ଼ି, ବେକରେ ପିତଳର ହାର ଏବଂ ଅଣ୍ଟାରେ ଛୋଟ ଛୋଟ ଘଣ୍ଟିଆର ଏକପ୍ରକାର ଗହଣା ପିନ୍ଧନ୍ତି । ଅନେକ ସ୍ତ୍ରୀ ଗୁଞ୍ଜା ବା କାଇଁଚର ମାଳ କଣ୍ଠରେ ଲମ୍ବାଇଥାନ୍ତି । ଅବିବାହିତା ଝିଅମାନେ ମୁଣ୍ଡବାଳକୁ ଛୋଟ ଛୋଟ କରି କାଟି ବେଣୀ ସଜାଇଥାନ୍ତି । ଏହା ପାଶ୍ଚାତ୍ୟ ଦେଶର ନାରୀମାନଙ୍କ ବାବୁରି ବାଳ ପରି ସୁନ୍ଦର ଦେଖାଯାଏ । ବିବାହ ପରେ ଏଭଳି ଢଙ୍ଗରେ କେଶ ସଜାଇବା ନାଗା ସମାଜରେ ଏକାବେଳେ ମନା । ପ୍ରତ୍ୟେକ ବିବାହିତା ଯୁବତୀର ପିଠି ଉପରେ ଖୋଲା ବାଳ ଲମ୍ବିଥାଏ । ଏଣୁ ଏହି କେଶସଜ୍ଜାରୁ କିଏ ଅବିବାହିତା ଓ କିଏ ବିବାହିତା, ସହଜରେ ବାରି ହୋଇଯାଏ ।

କୃଷି ନାଗାମାନଙ୍କର ପ୍ରଧାନ ଜୀବିକା । ସେମାନେ ପାହାଡ଼ର ଗୋଟିଏ ସ୍ଥାନ ସଫା କରି ଫଗୁଣ ବା ଚୈତ୍ର ମାସରେ ସେଠାର ଗଛଲତାମାନଙ୍କରେ ନିଆଁ ଲଗାଇଦିଅନ୍ତି । ସେଗୁଡ଼ିକ ପୋଡ଼ି-ଯାଇ ପାଉଁଶ ହୋଇଗଲେ ସାରର କାମ କରେ । ବର୍ଷାଋତୁ ଆସିବା ଆଗରୁ ନାଗାମାନେ ସେହି କ୍ଷେତମାନଙ୍କରେ ଧାନ ଓ

ଅନ୍ୟାନ୍ୟ ଶସ୍ୟ ବୁଣନ୍ତି ଏବଂ ପୁଷ ମାସରେ ଫସଲ ଅମଳ କରି ଘରେ ଜମା କରିଦିଅନ୍ତି । ଦୁଇ ତିନି ବର୍ଷ ପରେ ସେହି ସ୍ଥାନରେ ଚାଷକରିବା ପରେ ସେମାନେ ପୁଣି ଅନ୍ୟ ଗୋଟିଏ ସ୍ଥାନର ଗଛଲତା ପୋଡି ସେଠାରେ ସେହିପରି ଚାଷ କରନ୍ତି । ଏଭଳି ଚାଷକୁ ନାଗାମାନେ 'ଝୁମ' ଚାଷ କହନ୍ତି । ଏହା ଆମ ଓଡ଼ିଶାର କେତେକ ଆଦିବାସୀଙ୍କର 'ପୋଡ଼ୁ' ଚାଷ ପରି । ପ୍ରଥମେ ଯେଉଁ ସ୍ଥାନରେ ଝୁମ ଚାଷ ହୋଇଥାଏ, ତାହା ବର୍ଷାଜଳ ପାଇ କେତେକ ବର୍ଷ ପରେ ଗଛଲତାରେ ପୂରିଯାଏ । ନାଗାମାନେ ପୁଣି ସେଠାରେ କ୍ଷେତ କରି ଚାଷ ଆରମ୍ଭ କରିଦିଅନ୍ତି ।

ଧାନ ପ୍ରଭୃତି ଛଡ଼ା ନାଗାମାନେ ପାଣିକଖାରୁ, ମାଟିଆଳୁ, କପା, ଲଙ୍କାମରିଚ ଓ ଧୂଆଁପତ୍ର ମଧ୍ୟ ଚାଷ କରନ୍ତି । ଯେଉଁ କ୍ଷେତରେ ମାଟିଆଳୁ ଓ ପାଣିକଖାରୁ ହୁଏ, ତାହାର ମାଟିରେ ସେମାନେ ଗ୍ରେଟ ଗ୍ରେଟ ପଥରଚୂଆମାନ ପୋତିଦିଅନ୍ତି । ଏହି ଚୂଆସବୁର ଆକାର ମାଟିଆଳୁ ଓ ପାଣିକଖାରୁ ପରି । ତେଣୁ ନାଗମାନଙ୍କର ବିଶ୍ୱାସ ଯେ, ସେଗୁଡ଼ିକ ପୋତିଲେ ଗଛରେ ବହୁତ ଫଳ ହେବ ।

ଗାଈ, ବଳଦ, ଅରଣାମଇଁଷି, ଛେଳି, ମେଣ୍ଢା, କୁକୁର, କୁକୁଡ଼ା, ବିରାଡ଼ି, ଏଗୁଡ଼ିକ ନାଗା ପରିବାରର ପାଳିତ ପଶୁପକ୍ଷୀ । ଏଥିରୁ କେତେକଙ୍କର ମାଂସ ସେମାନେ ଖାଆନ୍ତି; କିନ୍ତୁ ଗାଈଦୁଧ ମୋଟେ ଖାଆନ୍ତି ନାହିଁ । ତାହା ଅତ୍ୟନ୍ତ ଅପବିତ୍ର ବୋଲି ସେମାନଙ୍କର ଧାରଣା । ଭାତ ନାଗାମାନଙ୍କର ପ୍ରଧାନ ଖାଦ୍ୟ । ଭାତକୁ ପଚାଇ ସେମାନେ 'ଜୁ' ନାମକ ଏକପ୍ରକାର ଦେଶୀ ମଦ ତିଆରି କରନ୍ତି ଏବଂ ପର୍ବପର୍ବାଣି, ଉତ୍ସବ ଆଦିରେ ତାହା ପିଅନ୍ତି । ନଈପାଣିରେ ବିଷ ପକାଇ ଅନେକ ନାଗା ସହଜରେ ମାଛ ଧରି

ଖାଆନ୍ତି । ଧୂଆଁପତର ପିକା ନାଗା ସମାଜର ଅତି ପ୍ରିୟ । ସବୁ ବାଉଁଶନଳରେ ଏହି ପିକାକୁ ପୂରାଇ କି ସ୍ତ୍ରୀ ପୁରୁଷ, କି ଯୁବକ-ଯୁବତୀ, ସମସ୍ତେ ଧୂଆଁ ଟାଣନ୍ତି ।

କେତୋଟି ମାଟିହାଣ୍ଡି, କଳସ ଓ ଘଡ଼ା ନାଗା ପରିବାରର ପ୍ରଧାନ କାରବାରୀ ଜିନିଷ । ଏହାଛଡ଼ା ବେତ ବା ବାଉଁଶଡାଲିଆରେ ବୁଣା ଟୋକେଇ, ପାଛିଆ ଓ ପେଡ଼ି ସବୁରି ଘରେ ଥାଏ । ଦାଆ, ଲଙ୍ଗଳ, କୋଡ଼ି, ବର୍ଚ୍ଛା, ଶର, ଧନୁ, ଏଗୁଡ଼ିକ ହେଉଛି କୃଷି ଓ ଶିକାରର ହତିଆର । ବର୍ଚ୍ଛାସବୁ ଖୁବ୍ ତୀକ୍ଷ୍ଣ ଅଣି ଧାରୁଆ । ତଳ୍ପରେ ବାଉଁଶର ବେଣ୍ଟ ଲାଗିଥାଏ । ଅନେକେ ଏହି ବେଣ୍ଟ ଉପରେ ଛେଳିଲୋମ ବା ପତଳା ବେତ ଗୁନ୍ଥିଥାନ୍ତି । ଅଙ୍ଗାମୀ ନାଗାମାନଙ୍କ ଘରେ ଢିଙ୍କି ନ ଥାଏ । ସେମାନେ 'ମେଡ଼' ନାମକ ଏକପ୍ରକାର ମୁଷଳ ସାହାଯ୍ୟରେ ଧାନ କୁଟି ଚାଉଳ ବାହାର କରନ୍ତି ।

ଏହି ସମାଜରେ ଅଲଗା ଅଲଗା ଗୋଷ ଅଛି । କେତୋଟି ଗୋଷର ନାଗା ମିଶି ଗୋଟିଏ ଦଳ ହୋଇଥାନ୍ତି । ଆଓ ନାଗା-ମାନେ ତିନୋଟିମାତ୍ର ଦଳରେ ବିଭକ୍ତ । ଏକ ଦଳରେ ଥିବା ବିଭିନ୍ନ ଗୋଷର ପରିବାରଙ୍କ ମଧ୍ୟରେ ବିବାହସମ୍ବନ୍ଧ ହୁଏ ନାହିଁ । ପୁଅର ବୟସ ଅନ୍ତତଃ ପଚିଶ ବର୍ଷ ଏବଂ ଝିଅର ବୟସ ଅଠର କି କୋଡ଼ିଏ ନ ହେଲେ ବିବାହପ୍ରସଙ୍ଗ ଉଠେ ନାହିଁ । ଯୁବକମାନେ ନିଜ ନିଜ ଇଚ୍ଛାମତେ କନ୍ୟା ଠିକ୍ କରନ୍ତି । ଆଓ ନାଗା ସମାଜରେ ଘଟକର ଜରିଆରେ ଏହା ସ୍ଥିର ହୋଇଥାଏ । କନ୍ୟାପିତା ବିବାହ-ପ୍ରସ୍ତାବରେ ରାଜି ହେଲେ ପଣ ଓ ବିବାହଦିନ ଧାର୍ଯ୍ୟ ହୁଏ । କେତୋଟି ବସ୍ତା ଧାନ ବା ଚାଉଳ, ଚମତ୍କାର ଗୋଟିଏ ଢାଲ, ଲୁହାର ଗୋଟିଏ ଦାଆ ଏବଂ କେତୋଟି ଟଙ୍କା ବରପକ୍ଷରୁ

କନ୍ୟାପିତାଙ୍କୁ ପଣସ୍ୱରୂପ ଦେବାକୁ ପଡ଼େ । ପ୍ରତ୍ୟେକ ବିବାହରେ ଏକଭୋଜ ହୁଏ ଏବଂ ମଉଜମଜଲିସ ବେଶ୍ ଚାଲେ । କୌଣସି କାରଣରୁ ବିବାହ ପରେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ମତଭେଦ ଘଟିଲେ ଦୁହେଁ ଦୁହିଁଙ୍କି ଛାଡ଼ିଦିଅନ୍ତି । ତାପରେ ନିଜ ନିଜର ଇଚ୍ଛା ଅନୁସାରେ ଅନ୍ୟକୁ ବିବାହ କରି ନୂଆ ସଂସାର ଗଢ଼ନ୍ତି ।

ନାଗାମାନେ ଅନେକ ଦେବତାଙ୍କୁ ପୂଜା କରନ୍ତି । ସେହି ଦେବତାମାନଙ୍କ ମଧ୍ୟରେ ସ୍ୱର୍ଗର ଦେବତା 'ଲୁଂକିଟିଂବା', ମର୍ତ୍ତ୍ୟର ଦେବତା 'ଲିଜାବା' ଏବଂ ମୃତାତ୍ମାର ଦେବତା 'ମୋଜିଂ' ପ୍ରଧାନ । ଏହିସବୁ ଦେବତାଙ୍କୁ ଖୁସି କରିବାପାଇଁ ନାଗାମାନେ କୁକୁଡ଼ା, କୁକୁର ଓ ବରାହ ଆଦି ବଳି ଦେଇଥାନ୍ତି । ଚାଷକୁ କେନ୍ଦ୍ର କରି ସେମାନଙ୍କ ସମାଜରେ ଅନେକ ପୂଜା ଓ ପର୍ବପର୍ବାଣି ଅନୁଷ୍ଠିତ ହୋଇଥାଏ ।

ଦୁଷ୍ଟ ପ୍ରେତାତ୍ମାମାନଙ୍କ ଯୋଗୁଁ ମନୁଷ୍ୟସମାଜରେ ମୃତ୍ୟୁ ଘଟେ ବୋଲି ନାଗାମାନଙ୍କର ବିଶ୍ୱାସ । ଇହଜଗତ ଓ ପରଜଗତ ଉଭୟକୁ ସେମାନେ ସ୍ୱୀକାର କରନ୍ତି । କୌଣସି ଲୋକ ମରିଗଲେ ତା ନିକଟରେ ଗୋଟିଏ କୁକୁଡ଼ା ମରାଯାଏ । ସେହି କୁକୁଡ଼ାଟିର ଆତ୍ମା ମଲାଲୋକର ଆତ୍ମା ସହିତ ପରଜଗତକୁ ଯାଏ ବୋଲି ସେମାନଙ୍କର ଧାରଣା । ଖୁବ୍ ସାହସୀ ବା ଲଢ଼ୁଆ ନାଗା ମଲେ ତାକୁ ଗୋଟିଏ କୁକୁର ବଳି ଦିଆଯାଏ । ସେମାନେ ମୃତଦେହକୁ ନ ପୋଡ଼ି ଗାତ ଖୋଳି ପୋତିଦିଅନ୍ତି । ପୂର୍ବେ ଆଓ ନାଗାମାନେ ଶବକୁ ଲୁଗାରେ ଘୋଡ଼ାଇପକାଇ ଜଳନ୍ତା ନିଆଁ ପାଖରେ ରଖି-ଦେଉଥିଲେ । ଏହିପରି କିଛି କାଳ ରହି ଶବଟି ଶୁଖିଗଲେ ତାହାକୁ ନେଇ ପୋତି ଦିଆଯାଉଥିଲା ।

ନରମୁଣ୍ଡ ଶିକାର ପ୍ରଥା ଆଗକାଳରେ ନାଗା ସମାଜରେ ଖୁବ୍ ପ୍ରଚଳିତ ଥିଲା । ଅନେକେ କହନ୍ତି, ଏହି ନିଷ୍ଠୁର କାର୍ଯ୍ୟର ଗୋଟାଏ ପ୍ରଧାନ ଉଦ୍ଦେଶ୍ୟ ଥିଲା । ତାହା ହେଉଛି ଶକ୍ତିସଂଚୟ । ସେହି ଶକ୍ତି ଯୋଗୁଁ ନାଗାମାନେ ଏକ ଜାତିଜାତି ହୋଇପାରିଥିଲେ ଏବଂ ଯେକୌଣସି ଶତ୍ରୁକୁ ପରାସ୍ତ କରିବାର ସାହସ ଅର୍ଜନ କରିଥିଲେ ।

ନାଗାମାନେ ନରମୁଣ୍ଡ ଆଣି କ୍ଷେତମାଟିରେ ରଖନ୍ତି । ସେମାନଙ୍କର ଦୃଢ଼ବିଶ୍ୱାସ ଯେ, ମନୁଷ୍ୟର ମୁଣ୍ଡ ହେଉଛି ସମସ୍ତ ଶକ୍ତିର ଆଧାର; ତେଣୁ ସେହି ମୁଣ୍ଡ ପାଇଲେ ତହିଁରେ ଥିବା ଶକ୍ତି ମାଟି ଭିତରକୁ ଚାଲିଯାଏ । ଫଳରେ କ୍ଷେତର ଉର୍ବରଶକ୍ତି ବେଶୀ ହୁଏ, ଖୁବଅଧିକ ଫସଲ ଉପୁଜେ ଏବଂ ଗ୍ରାମମାନଙ୍କର ସମ୍ପଦ ବଢ଼େ । ଏହି କାରଣରୁ ସେମାନେ ନରମୁଣ୍ଡ ଶିକାରପାଇଁ ବରାବର ସୁଯୋଗ ଖୋଜୁଥାନ୍ତି ।

ଏହି ଶିକାରପାଇଁ ପ୍ରତ୍ୟେକ ଗ୍ରାମରେ ଦଳେ ନାଗା ସର୍ବଦା ପ୍ରସ୍ତୁତ ରହିଥାନ୍ତି । ଦଳଟିର ଜଣେ ଦଳପତି ଥାଏ । ତାହାର ଉପାଧି ହେଉଛି 'ୱାର' । ଖୁବ୍ ସାହସୀ ଓ ବୟସ୍କ ବ୍ୟକ୍ତି ନ ହେଲେ କେହି ଦଳପତି ହୋଇପାରେ ନାହିଁ । ଶିକାର ସମୟରେ ଦଳପତି ଏକ ବିଚିତ୍ର ବେଶରେ ନିଜକୁ ସଜାଏ । ତା ମୁହଁରେ କୌଣସି ଏକ ଭୀଷଣ ଚିତ୍ର ଅଙ୍କାଯାଏ । ସେ ମୁଣ୍ଡରେ ବେତଟୋପି ପିନ୍ଧେ ଏବଂ ସେହି ଟୋପି ଉପରେ ଛେଳିଲୋମର ଚୂଳ ଦିଏ ଓ ବଙ୍କା ଶିଙ୍ଗଟିଏ ମାରେ । ତାର ଗୋଟିଏ ହାତରେ ଥାଏ ବର୍ଚ୍ଛା, ଆର ହାତରେ ଢାଲ; ପୁଣି କାନ୍ଧରେ ଝୁଲେ ଶର, ଧନୁ । ତାହା ର ପଛରେ ଥାଆନ୍ତି ଶିକାରୀ ଦଳ ।

କାହାରକୁ ଶତ୍ରୁ ବୋଲି ଆଶଙ୍କା କଲେ ସଙ୍ଗେ ସଙ୍ଗେ ଦଳପତି ତାର ଶିକାରୀ ଦଳ ସହିତ ଯୁଦ୍ଧକୁ ବାହାରିପଡ଼େ । ଶତ୍ରୁସଂଖ୍ୟା ଯେତେ ବେଶୀ ଥିଲେ ମଧ୍ୟ ସେଥିପ୍ରତି ତାର ଭ୍ରୂକ୍ଷେପ ହେଲେ ଚିନ୍ତା ନ ଥାଏ । ଶତ୍ରୁ ପରାସ୍ତ ହେଲେ ଦଳପତି ତାହାର



[ ନାଗା ଦଳପତି ]

ମୁଣ୍ଡକୁ ଦଣ୍ଡକେ କାଟିପକାଏ ଏବଂ ସେହି କଟାମୁଣ୍ଡ ଧରି ଖୁବ୍ ଗର୍ବରେ ଗ୍ରାମକୁ ଫେରିଆସେ । ଗ୍ରାମବାସୀମାନେ ବାଜା ବଜାଇ ଦଳପତି ଓ ଶିକାରୀ ଦଳକୁ ଆନନ୍ଦରେ ପାଛୋଟି ନଅନ୍ତି ।

ବ୍ରିଟିଶ ସରକାର କଡ଼ା ଆଇନ ଜାରି କରି ନାଗାମାନଙ୍କ ନରମୁଣ୍ଡ ଶିକାର ପ୍ରଥାକୁ ବନ୍ଦ କରିବାପାଇଁ ପ୍ରବଳ ଚେଷ୍ଟା କରିଥିଲେ । ଆଇନବଳରେ ଏହି ଶିକାର ଅନେକ କମିଯାଇଛି,

କନ୍ତୁ ପରିପୂର୍ଣ୍ଣ ଲୋପ ପାଇ ନାହିଁ । ଏବେ ମଧ୍ୟ ନରମୁଣ୍ଡ ଶିକାର କଥା ଖବରକାଗଜରେ ବେଳେ ବେଳେ ପ୍ରକାଶିତ ହେବାର ଦେଖାଯାଏ ।

ନାଗାମାନଙ୍କର ହିଂସ୍ର ପ୍ରକୃତି ଆଗପରି ଆଉ ନାହିଁ । ତଥାପି ସୋନପୁରର ହରିହରଛତ୍ର ମେଳା, ପୁରୀର ରଥଯାତ୍ରା ପ୍ରଭୃତିକୁ ହଜାର ହଜାର ସଂଖ୍ୟାରେ ଯେତେବେଳେ ନାଗାଦଳ ଯାଆନ୍ତି, ସେଠାର ଯାତ୍ରୀ ଓ ଲୋକମାନଙ୍କ ମଧ୍ୟରେ ଘୋର ଆତଙ୍କ ଖେଳିଯାଏ ।

ନାଗାମାନଙ୍କ ରକ୍ତରେ ଉଗ୍ରତା ଥିଲେ ମଧ୍ୟ ସେମାନଙ୍କ ହୃଦୟରେ ଅତିଥିସେବାର ପ୍ରବୃତ୍ତି କମ୍ ନ ଥାଏ । କୌଣସି ଆଗନ୍ତୁକକୁ ଦେଖିବାମାତ୍ରେ ନାଗା ପରିବାରର ଲୋକେ ତାହାକୁ ଆଦରରେ ଘରକୁ ଡାକିନେଇ ଚର୍ଚ୍ଚା କରନ୍ତି । ସେମାନଙ୍କର ଏହି ସେବା ମନୋଭାବ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ।

## ପ୍ରଶ୍ନ

୧ । ନାଗାମାନେ କାହିଁକି ନରମୁଣ୍ଡ ଶିକାର କରନ୍ତି ?

୨ । ନାଗା ଦଳପତିର ବେଶ ବର୍ଣ୍ଣନ କର ।

୩ । ବିବାହିତା ଓ ଅବିବାହିତା ନାଗା ଯୁବତୀଙ୍କୁ କପରି ଚିହ୍ନିବ ?

୪ । ନାଗା ପରିବାରର ପ୍ରଧାନ ପ୍ରଧାନ ଘରସରଞ୍ଜାମର ନାମ କଣ ?

୫ । '(କ)' ବିଭାଗର କେଉଁ ବିଶେଷଣ '(ଖ)' ବିଭାଗର କେଉଁ ବିଶେଷ୍ୟର ଉପଯୁକ୍ତ, ବାଛିଦିଅ :—

(କ) ଜଙ୍ଗଲୀ, ତୀକ୍ଷ୍ଣ, କଡ଼ା, ପ୍ରବଳ, ହିଂସ୍ର ।

(ଖ) ପ୍ରକୃତି, ଚେଷ୍ଟା, ନିଆଁ, ବର୍ଚ୍ଛା, ଆଇନ ।

---

# ଚେହେରା

ଆମ ଓଡ଼ିଶାର ଗଡ଼ଜାତ ଅଞ୍ଚଳମାନଙ୍କ ପାହାଡ଼ପର୍ବତ ଓ ବଣ ଘେରି ରହିଛି । ତହିଁରେ କେତେ ନିର୍ଝରିଣୀ ସ୍ୱଚ୍ଛ ଜଳଧାର ଦେଇ ନାଚି ନାଚି ବହିଯାଏ । ନାନାପ୍ରକାର ତରୁଲତା ଓ ଫୁଲ ଫଳ ଚାରିଆଡ଼କୁ ସୌନ୍ଦର୍ଯ୍ୟରେ ଭରିଦେଇଥାଏ । ଶୁଆ, ସାରି, କୋଇଲି, ମୟୂର ଆଦି ପକ୍ଷୀଙ୍କ ସ୍ୱରରେ ବଣଭୂଇଁ ସଙ୍ଗୀତମୟ ହୋଇଥାଏ । ତାହା ମଧ୍ୟରେ ବାଘ, ଭାଲୁ, ହରିଣ, ସମ୍ବର, ବଗିହ ପ୍ରଭୃତି ଜନ୍ତୁ ସ୍ୱଚ୍ଛନ୍ଦରେ ଚାରିଆଡ଼େ ବିଚରଣ କରୁଥାନ୍ତି ।

ଏହି ସୁନ୍ଦର ବଣଜଙ୍ଗଲ ଓ ପାହାଡ଼ପର୍ବତମାନ ଓଡ଼ିଶାର ଆଦିବାସୀମାନଙ୍କର ପ୍ରିୟସ୍ଥାନ । ସାନ୍ତାଳ, ମୁଣ୍ଡା, ଜୁଆଙ୍ଗ, କୋନ୍ଧ, ଏହିମାନେ ଓଡ଼ିଶାର ପ୍ରଧାନ ଆଦିବାସୀ । ଏମାନଙ୍କ ଛଡ଼ା 'ପରଜା' ନାମକ ଏକ ଶ୍ରେଣୀର ଆଦିବାସୀ କୋରାପୁଟ ଜିଲ୍ଲାର ଜଙ୍ଗଲରେ ଅଛନ୍ତି । ଏମାନେ ଓଡ଼ିଶାର ସବୁଠାରୁ ଆଦିମ ଅଧିବାସୀ । 'ବଣ୍ଡା-ପରଜା' ନାମକ ପରଜାଶ୍ରେଣୀର ଆଦିବାସୀ ଏହି ଜିଲ୍ଲାରେ ଥିବା ନବରଙ୍ଗପୁର ସବ୍‌ଡ଼ିଭିଜନର ମାତିଲି ଥାନାରେ ଦେଖାଯାନ୍ତି । ଏମାନେ ପାର୍ବତ୍ୟ ଉପତ୍ୟକାର ପ୍ରାୟ ତିନି ଶହ ବର୍ଗମାଇଲ ଅଞ୍ଚଳରେ ବାସ କରନ୍ତି । ସାନ୍ତାଳ ଓ ମୁଣ୍ଡାମାନେ ମୟୂରଭଞ୍ଜର ବଣରେ ଅଧିକ ଦେଖାଯାନ୍ତି । କେନ୍ଦୁଝର, ଢେଙ୍କାନାଳ, ହିନ୍ଦୋଳ ପ୍ରଭୃତି ଅଞ୍ଚଳର ଜଙ୍ଗଲ ଜୁଆଙ୍ଗମାନଙ୍କର ବାସସ୍ଥାନ । 'ଓରାଓଁ' ନାମକ ଆଦିବାସୀ ମଧ୍ୟ ଓଡ଼ିଶାର କେତେକ ପାର୍ବତ୍ୟ ଅଞ୍ଚଳରେ ଦେଖାଯାନ୍ତି, ମାତ୍ର ସେମାନଙ୍କ ସଂଖ୍ୟା ଖୁବ୍ ଅଳ୍ପ ।

କୋନ୍ଧମାନେ ଢେଙ୍କାନାଳ ଓ ସୁନ୍ଦରଗଡ଼ ଜିଲ୍ଲାରେ ଏବଂ କଟକ ଜିଲ୍ଲାର ଆଠଗଡ଼ ଅଞ୍ଚଳରେ ବେଶୀ ରହିଛନ୍ତି । ଏମାନେ

ଖ୍ରୀଷ୍ଟପୂର୍ବରୁ ଧରି ବଣପାହାଡ଼ରେ ଶିକାର କରି ବୁଲୁଥିବାର ସମସ୍ତ ସମୟରେ ଦେଖାଯାଏ । କୋଲ୍ଲ ଶ୍ରେଣୀର ପରିଶ୍ରମୀ ଲୋକେ ନିଜଭାଷାରେ ନିଜକୁ 'ହୋ' ବୋଲି ପରିଚୟ ଦିଅନ୍ତି । 'ହୋ' ଶବ୍ଦର ଅର୍ଥ 'ମଣିଷ' । ଛୋଟନାଗପୁର ଓ ସିଂହଭୂମିର ଦାବଡ଼ା ଭୂମିରେ ମଧ୍ୟ ଅସଂଖ୍ୟ ହୋ ବାସ କରି ରହିଛନ୍ତି । ସେମାନେ ଅନ୍ୟ ଆଦିବାସୀମାନଙ୍କୁ 'ଦିକୁ' ବା 'ବିଦେଶୀ' ବୋଲି ଭାବନ୍ତି; ତେଣୁ ସେମାନଙ୍କୁ ନିଜ ବାସସ୍ଥାନ ନିକଟରେ ରଖାଇଦିଅନ୍ତି ନାହିଁ ।

ହୋମାନଙ୍କର ସଂଖ୍ୟା ପାଞ୍ଚ ଲକ୍ଷରୁ ଅଧିକ । ସେମାନେ ମୁଣ୍ଡାରୀ ଭାଷାରେ କଥାବାର୍ତ୍ତା କରନ୍ତି ।

ହୋ ମାନେ ବାଙ୍ଗର । ସେମାନଙ୍କର ମୁଣ୍ଡ ଲମ୍ବ, ମୁହଁ ସରୁ, ନାକ ଚେପ୍ଟା ଓ ଦେହର ରଙ୍ଗ ଗାଢ଼ କଳା । ମୁହଁରେ ନିଶ-ଦାଢ଼ି ଖୁବ୍ କମ୍ । ହୋ ଝିଅମାନଙ୍କର ସବୁଠାରୁ ବେଶୀ ପ୍ରିୟ ହେଉଛି ଫୁଲ । ସେମାନେ ନାନା ରଙ୍ଗର ଫୁଲରେ କବରୀ ସଜାନ୍ତି ଏବଂ ସନ୍ଧ୍ୟାବେଳେ ଦଳ ଦଳ ହୋଇ ଗୀତ ଗାଇ ଗାଇ ଖୋଲା ପବନରେ ବିଚରଣ କରନ୍ତି । ହୋ ରମଣୀମାନେ କପାଳରେ, ହାତରେ ଓ ଗୋଡ଼ରେ ଚିତା କୁଟନ୍ତି ।

ଆଗେ ସେମାନେ ସାଦା ରଙ୍ଗର ଶାଢ଼ୀ ଖଣ୍ଡିଏ ଖଣ୍ଡିଏ ପିନ୍ଧୁଥିଲେ; ମାତ୍ର ଏବେ ସେମାନଙ୍କ ରୁଚି ବଦଳିଯାଇଛି । ସୁନ୍ଦର ସୁନ୍ଦର ଶାଢ଼ୀ ଓ ବ୍ଲାଉଜରେ ହୋ ନାରୀମାନେ ନିଜ ନିଜର ଅଙ୍ଗ ସଜାଉଛନ୍ତି । ଏହାଛଡ଼ା ନାନା ପ୍ରକାର ଗହଣା ପ୍ରତି ସେମାନଙ୍କର ସାଧ ବଢ଼ି ଯାଇଛି । ଆଜିକାଲି ସେମାନେ ଜୁଡ଼ାରେ ରୁପାର କଣ୍ଟା, ଫୁଲ ଓ ପ୍ରଜାପତି ଖୋଷୁଛନ୍ତି । କାନରେ ଗର୍ଣ୍ଣିଆ ଓ କାନଫୁଲ, ନାକରେ ଗුଣା, ନୋଥ, ନାକଚଣା ଓ ନୋଲକ, ଗଳାରେ ହାର, ହାତରେ ଓସାରିଆ ଚୁଡ଼ି, ପାଦରେ ପାହୁଡ଼ ଏବଂ ଗୋଡ଼ରେ ମୁଦି

ପିନ୍ଧୁଛନ୍ତି । ନିତାନ୍ତ ଗରିବ ଦୁଃଖୀ ଘରର ଝିଅମାନେ ପିତ୍ତଳ କିମ୍ବା ଅଳ୍ପ ଦାମ୍‌ର ରୂପା ଗହଣା ବ୍ୟବହାର କରନ୍ତି ।



[ ହୋ ରମଣୀ ]

ପୁରୁଷମାନେ ପୂର୍ବେ ଲେଙ୍ଗୋଟି ଓ ଅଣ୍ଟସାରିଆ ମୋଟା ଧୋତି ପିନ୍ଧୁଥିଲେ; ମାତ୍ର ଏବେ ସେମାନେ ବଜାରରୁ ଭଲ ଭଲ ଲୁଗା କିଣି ପିନ୍ଧୁଛନ୍ତି । କେବଳ ଏତିକି ନୁହେଁ, ସଭ୍ୟ ସମାଜର ଅନୁକରଣରେ ଗେଞ୍ଜି, ଜାମା ଓ ଜୋତା ମଧ୍ୟ ବ୍ୟବହାର କରୁଛନ୍ତି ।

ଊର୍ଦ୍ଧ୍ୱରେ ପାହାଡ଼, ନିମ୍ନରେ ବନ୍ଧୁର ଢାଲୁଭୂମି, ଏହାର ମଧ୍ୟରେ ହୋମାନଙ୍କର ବସନ୍ତି । ପ୍ରତ୍ୟେକ ଗ୍ରାମର ମଝିରେ ଗୋଟିଏ ଲମ୍ବା ବଡ଼ ଦାଣ୍ଡ, ତାହାର ଦୁଇ ପାଖରେ କୁଡ଼ିଆମାନ ଶୋଭା ପାଏ । ଘରର ଓସାରିଆ ହାରଟି ଦାଣ୍ଡ ଆଡ଼କୁ ନ ହୋଇ ଅନ୍ୟ କୌଣସି ଆଡ଼କୁ ହୋଇଥାଏ । କାନ୍ଥଗୁଡ଼ିକ ମାଟିରେ ତିଆରି ଏବଂ ତହିଁରେ ଆଦୌ ଝରକା ନ ଥାଏ । ଘରମାନଙ୍କ ଛାତ ଶୁଖିଲା ଘାସରେ ଛାଆଣି । ଗୃହିଣୀମାନେ କାନ୍ଥରେ ଧଳା, ନାଳି, କଳା ଆଦି ବିଭିନ୍ନ ରଙ୍ଗରେ ନାନାପ୍ରକାର ଚିତ୍ର, ଝୋଟି ଓ ଚିହ୍ନ ଆଙ୍କିଥାନ୍ତି । ଘରର ବଖରାମାନ ଘରକରଣାର ସୁବିଧାପାଇଁ ଛୋଟ ଛୋଟ ହୋଇ ତିଆରି ହୋଇଥାଏ । କେଉଁ ବଖରାରେ ଧାନଗୃହଳ ରହେ, କାହିଁରେ ଜନ୍ତୁପଶୁ ରହେ, ଆଉ କେତେକରେ ପୁରୁଷ ଓ ସ୍ତ୍ରୀମାନେ ଶୁଅନ୍ତି । ଏହି ବଖରାମାନଙ୍କ ଛଡ଼ା ଗାଈଗୋରୁ ଓ ଛେଳିମେଣ୍ଢା ରହିବାପାଇଁ ଘରକୁ ଲାଗି କେତୋଟି ଛୋଟ ଛୋଟ 'ଝମ୍ପୁଡ଼ି' ବା 'ଗୁଳଆ' ରହିଥାଏ ।

ଏହି କୁଡ଼ିଆଗୁଡ଼ିକ ବଡ଼ ସଫାସୁତୁରା । ପ୍ରତ୍ୟେକ ଘର ସହିତ କିଛି ଖୋଲା ଜାଗା ଲାଗି ରହିଥାଏ । ସେଥିରେ ଋତୁ ଅନୁସାରେ ଭିନ୍ନ ଭିନ୍ନ ପନିପରିବା ଚାଷ କରାଯାଏ । ଏହାଛଡ଼ା ପ୍ରତି ଘରେ ଗୋଟିଏ ଲେଖାଏଁ ଅଗଣା ଥାଏ । ଏହାକୁ ହୋମାନେ ମଶାଣିରୂପେ ବ୍ୟବହାର କରନ୍ତି । କୁଟୁମ୍ବ ମଧ୍ୟରୁ କୌଣସି ଲୋକ ମରିଗଲେ ତାହାକୁ ସେହି ଅଗଣାରେ ସମାଧି ଦିଅନ୍ତି ଏବଂ ସମାଧି-ଉପରେ ଖଣ୍ଡେ ଲମ୍ବାଚଉଡ଼ା ପଥର ରଖି ମରିଯାଇଥିବା ଲୋକକୁ ସେହିଠାରେ ମୁଣ୍ଡିଆ ମାରନ୍ତି ।

କେତେକ ଅଞ୍ଚଳରେ ଶବ ପୋଡ଼ାଯାଏ । ସ୍ତ୍ରୀଲୋକ ଶବ-ସତ୍କାର କାର୍ଯ୍ୟରେ ବିଶେଷ ଭାବରେ ସାହାଯ୍ୟ କରିଥାନ୍ତି । ମୃତ

ବ୍ୟକ୍ତିର ସ୍ତ୍ରୀ, କୁମାରୀ କନ୍ୟା ଓ ଭଉଣୀ ଚିତାରେ ନିଆଁ ଦିଅନ୍ତି । ସେହିମାନେ ପାଣି ଢାଳି ଚିତାର ନିଆଁ ଲିଭାନ୍ତି ଏବଂ ଅସ୍ଥି ସଂଗ୍ରହ କରନ୍ତି । ତାପରେ ସେହି ଅସ୍ଥି ଆଣି ଅଗଣାରେ ପୋତି ତା ଉପରେ ପଥରର ସମାଧି ଗଢ଼ନ୍ତି । ଏହି ସମାଧିପଥରକୁ ଡୋମାନେ 'ନଶାଣ' କହନ୍ତି ।

ଝୋଞ୍ଚାମଣ୍ଡିରେ ଗୋଟିଏ ବଡ଼ ମାଟିବେଢା ତିଆରି ହୋଇଥାଏ । ଡୋମାନଙ୍କ ଭାଷାରେ ତାର ନାମ 'ଆଦିଂ' । ସେଇଟି ସବୁବେଳେ ଲିପାପୋଛା ହୋଇ ନିର୍ମଳ ରଖାଯାଇଥାଏ । ସେହି ବେଢାରେ ପୂର୍ବ-ପୁରୁଷମାନଙ୍କର ଆତ୍ମା ରହିଥାଏ ବୋଲି ଡୋମାନେ ବିଶ୍ୱାସ କରନ୍ତି; ଏଥିପାଇଁ 'ଦକୁ' ବା ଅନ୍ୟ କୌଣସି ସମ୍ପ୍ରଦାୟର ଲୋକଙ୍କୁ ଏହା ଛୁଆଇଁ ଦିଅନ୍ତି ନାହିଁ ।

ଡୋମାନଙ୍କ ଘରକରଣା ଜିନିଷର ସଂଖ୍ୟା ଖୁବ୍ ଅଳ୍ପ । କେତୋଟି ହାଣ୍ଡିଆଟିକା, ମାଟିଭାଣ୍ଡ ଏବଂ ପଥରର କେତେ ଖଣ୍ଡି ଗିନା, ଥାଳିଆ, ବେଲା, ଏଇ ହେଲା ନିତ-କାରବାରୀ ଜିନିଷ । ଏଇଥିରେ ସେମାନେ ରନ୍ଧାବଢ଼ା ଓ ଖିଆପିଆ କାର୍ଯ୍ୟ ଚଳାଇ-ନିଅନ୍ତି । କାହାରି କାହାରି ଘରେ ଆଲୁମିନିୟମର ଡେକଚି, ଗିଲାସ ଏବଂ ଲୁହାର କଡ଼େଇ, ଚାଟୁଆ ପ୍ରଭୃତି କେତେକ ସରଞ୍ଜାମ ଦେଖାଯାଏ । ଯାହାର ଅବସ୍ଥା ଟିକିଏ ଭଲ, ସେ କଂସାର ଥାଳି, ଗିନା, କଂସା ଏବଂ ପିତଳର ଗରା, କୁଣ୍ଡ ଆଦି ରଖିଥାଏ । ସାଧାରଣ ଘରର ସ୍ତ୍ରୀମାନେ ନଈଖାଲକୁ କଳସୀ କରି ତହିଁରେ ପାଣି ଆଣନ୍ତି । ସେମାନେ ବାଉଁଶପାତିଆରେ କୁଲା, ଗୁଞ୍ଜଲପୁଆ, ଝୋପଲି, ମାଛଖାଲୋଇ ଆଦି, ବାଉଁଶକଣିରେ ଖୋଟେଇ, ପାତିଆ ଏବଂ ବେତରେ ଟେଡି, ବେଠା, ଝୋଟକଇ, ମାଣ, ଗୌଣୀ ପ୍ରଭୃତି ବୁଣନ୍ତି । ଏହାଛଡ଼ା ଏକପ୍ରକାର ଘାସରେ ଦଉଡ଼ି ବଳି

ଢଙ୍ଗରେ ଖଟିଆ ତିଆରି କରନ୍ତି । କେତେକ ହୋଙ୍କ ଘରେ ବଛଣାପଟ ଦେଖାଯାଏ ।

କୃଷି ହୋମାନଙ୍କର ପ୍ରଧାନ ଜୀବିକା । ସେମାନଙ୍କ ପାଖରେ ଲଙ୍ଗଳ, ଜୁଆଳି, ଛିଟ, କଣ୍ଟି, ଫାଳ, ବଡା, ମଇ, ଦାଆ, କୋଡ଼ି, କୋଦାଳ, କାଙ୍କ ଆଦି କୃଷିର ସବୁ ସରଞ୍ଜାମ ଥାଏ । ହଳେ ଲେଖାଏଁ ବଳଦ ବା ପୋଡ଼ ପ୍ରାୟ ସମସ୍ତେ ରଖିଥାନ୍ତି । ଘରପାଖ ଖୋଲା ଜମିରେ ସେମାନେ ଫସଲ କରନ୍ତି । ବର୍ଷାଦିନେ ପାହାଡ଼-ଉପରୁ ଜଳ ବହିଆସି କ୍ଷେତରେ ମାଡ଼ିଯାଏ । ତାହା ଦେଖି ହୋମାନଙ୍କର ପ୍ରାଣ ଅପୂର୍ବ ଆନନ୍ଦରେ ପୂରିଉଠେ । ସେମାନେ ଗୀତ ଗାଇ ଗାଇ କୃଷିକାମରେ ମାତିଯାନ୍ତି ।

ଅଶ୍ୱିନ ମାସ ହେଲେ ବୃଷ୍ଟିପରିମାଣ କମିଆସେ । କୃଷୀମାନେ ଧାନକ୍ଷେତରୁ ବାଳୁଙ୍ଗାଘାସ ଉପାଡ଼ିଦିଅନ୍ତି । କାର୍ତ୍ତିକରେ ଧାନ-ଗଛସବୁ ଫୁଲ ଉଡ଼ାଏ । ମଗୁଶିର ମାସରେ କଥିଆମାନ ହଳଦିଆ ଧାନକେଣ୍ଡାରେ ଭରିଉଠେ । ପବନ ଧାନଗଛମାନଙ୍କ ଅଗକୁ ଧୀରେ ଧୀରେ ଦୋହଲାଇ ଲହରୀ ଭଳି ନଚାଏ । ସୂର୍ଯ୍ୟର ସୁନେଲି କିରଣ ପଡ଼ିଲେ କ୍ଷେତର ଶୋଭା ଆହୁରି ବଢ଼ିଯାଏ । ମନେ ହୁଏ, ସତେ ଯେପରି ପୃଥିବୀ ପୀତପାଟ ପିନ୍ଧିଛି । ପୌଷ ମାସରେ ହୋ-କୃଷୀଙ୍କ ଖଳା ନୂଆ ଧାନରେ ପୂର୍ଣ୍ଣ ହୋଇଯାଏ ସାରା ବର୍ଷର କଠିନ ପରିଶ୍ରମକୁ ଭୁଲିଯାଇ ନାରୀ ପୁରୁଷ ସମସ୍ତେ ଧାନଅମଳରେ ଲାଗିପଡ଼ନ୍ତି । ସାରା ଗ୍ରାମ ନାଚଗୀତ ଓ ଆନନ୍ଦକୋଳାହଳରେ କମ୍ପିଉଠେ । ହୋମାନଙ୍କ ଆଖିରେ ସୁନେଲି ଧାନଗଦାର ମୂଲ୍ୟ ସୁନାମୁଣ୍ଡାଠାରୁ ମଧ୍ୟ ଆହୁରି ବେଶୀ ।

ଅନ୍ୟାନ୍ୟ ଆଦିବାସୀଙ୍କ ପରି 'ହାଣ୍ଡିଆ' ହୋମାନଙ୍କର ଭାରି ପ୍ରିୟ । ଏହା ଖାଇ ସେମାନେ ଖୁବ୍ ଉତ୍ତେଜନା ଓ ଫୂର୍ତ୍ତି ଅନୁଭବ

କରନ୍ତି; ତେଣୁ ମନଫୁଲାଣିଆ ଗୀତ ଗାଇ ଓ ନାନା ଭଙ୍ଗୀରେ ନାଚ ଆନନ୍ଦଆମୋଦରେ ବିଭୋର ହୁଅନ୍ତି ।

ହିନ୍ଦୁ ସମାଜର ଗୋତ୍ର ପରି ହୋମାନଙ୍କର ମଧ୍ୟ ବିଭିନ୍ନ ଗୋତ୍ର ଅଛି । ସେମାନେ ଗୋତ୍ରକୁ 'କିଲି' କହନ୍ତି । ମୁନିଋଷିଙ୍କ ନାମ ଅନୁସାରେ ଆମ ଗୋତ୍ରସବୁର ନାମ ହୋଇଛି । କଶ୍ୟପ ଋଷିଙ୍କ ନାମରୁ 'କାଶ୍ୟପ' ଗୋତ୍ର, 'ଭରଦ୍ୱାଜ' ମୁନିଙ୍କ ନାମରୁ 'ଭରଦ୍ୱାଜ' ଗୋତ୍ର, ଏହିପରି ଆମର ଅନେକ ଗୋତ୍ର ଅଛି । ହୋମାନଙ୍କ 'କିଲି'ର ନାମ ସେପରି ନୁହେଁ । ବୃକ୍ଷଲତା ଓ ଜୀବଜନ୍ତୁଙ୍କ ନାମ ଅନୁସାରେ ସେମାନଙ୍କ ଗୋତ୍ରଗୁଡ଼ିକର ନାମ ହୋଇଛି । ପ୍ରତ୍ୟେକ ଗୋତ୍ରର ହୋ ସେହି ଗୋତ୍ରର ବୃକ୍ଷଲତା ବା ଜୀବଜନ୍ତୁକୁ ଭକ୍ତି କରନ୍ତି ଏବଂ ଭୁଲ୍‌ରେ ସୁଦ୍ଧା ତାହାକୁ ହାଣନ୍ତି ନାହିଁ କିମ୍ବା ତା ଦେହରେ ଟାଙ୍ଗିଆ ଲଗାନ୍ତି ନାହିଁ ।

ସମାନ ଗୋତ୍ରରେ ବିବାହ ହୋ ଗୋଷ୍ଠୀରେ ଆଦୌ ହୁଏ ନାହିଁ । ଏହି ସମାଜରେ ଯୁବକ୍ତିବିବାହ ଚଳେ । ମୁରବିମାନେ ଜଣେ ମଧ୍ୟସ୍ଥ ଜରିଆରେ କନ୍ୟାପାତ୍ର ଠିକ୍ କରନ୍ତି । ଏଭଳି ବିବାହକୁ 'ଆନ୍ଦି' କୁହାଯାଏ । କନ୍ୟାର ମୁରବି ସହିତ କଥାବାର୍ତ୍ତା କରି ଯେଉଁ ମଧ୍ୟସ୍ଥ ବିବାହତିଥି ଓ ବିବାହସର୍ତ୍ତ ସ୍ଥିର କରେ, ତାହାକୁ ହୋ ଭାଷାରେ 'ଦୂତମ' ବୋଲଯାଏ । 'ଦୂତ' ଶବ୍ଦରୁ ଏହି ଶବ୍ଦଟି ଆସିଥିଲା ପରି ମନେ ହୁଏ । ତାହାପରେ 'ଦେଉରି' ଅର୍ଥାତ୍ ପୁରୋହିତ ଆସି ହୋମାନଙ୍କ ଭଗବାନ 'ସିଂବୋଙ୍ଗା'ଙ୍କୁ ମନ୍ତ୍ର ପଢ଼ି ପୂଜା କରେ । ଶେଷରେ କୌଳିକ ରୀତିରେ ବିବାହକାର୍ଯ୍ୟ ଶେଷ ହୁଏ । ଏହି 'ଆନ୍ଦି' ବିବାହ କ୍ରମେ ହୋ ସମାଜରୁ କମିଆସୁଛି ।

କୌଣସି କୌଣସି ଅଞ୍ଚଳରେ ଅନ୍ୟ ରୀତିରେ ମଧ୍ୟ ବିବାହ କାର୍ଯ୍ୟ ହୋଇଥାଏ । ବ୍ରାହ୍ମଣ ଶାଳଗ୍ରାମମୂର୍ତ୍ତି ଯେନି ଉପସ୍ଥିତ ହୁଏ ।

ବର ହାତରେ କୁଶ ଧରି କନ୍ୟାର ଗୃହପଚ୍ଛେ ସାତ ଥର ବୁଲି ତାହାର କପାଳରେ ସିନ୍ଦୂରଟୋପା ପିନ୍ଧାଇଦିଏ । ତାପରେ କନ୍ୟା ମଧ୍ୟ ଠିକ୍ ସେହିପରି ବରର ଗୃହକଡ଼ରେ ସାତ ଥର ବୁଲି ତା ମଥାରେ ସିନ୍ଦୂରଟୋପା ଦିଏ । ଏହା ସାଇପଡ଼ଶା ଓ ବନ୍ଧୁବାନ୍ଧବ-ମାନଙ୍କ ଆଗରେ ହୋଇଥାଏ । ଏହିରୂପେ ବିବାହକାର୍ଯ୍ୟ ଶେଷ ହେଲା ପରେ ଭୋଜିଭାତ ଆରମ୍ଭ ହୁଏ ।



[ ହୋ ଯୁବକ ]

ହୋ ସମାଜରେ ସ୍ୱାଧୀନ ବିବାହ ପ୍ରଥା ମଧ୍ୟ ଚଳେ । ହାଟ, ଯାତ୍ରା ବା ମେଳାମଉଛବରେ ଯଦି ହୋ ଯୁବକ କୌଣସି ହୋ ଯୁବତୀର ମଥାରେ ସିନ୍ଦୂର ଲଗାଇଦିଏ, ତାହାହେଲେ ସେହି ଯୁବତୀଟି ତାର ସ୍ତ୍ରୀ ହୋଇଥାଏ । ଏହାକୁ 'ସିନ୍ଦୂରଦାନ' ବିବାହ କୁହାଯାଏ । ସାଧାରଣତଃ ଗରିବ ଘରମାନଙ୍କରେ ଏଭଳି ରୀତିରେ ବିବାହ ବେଶୀ ହୁଏ । ଏଥିରେ ବିବାହଖର୍ଚ୍ଚ ଖୁବ୍ କମ୍ ପଡ଼େ ।

ଏ ଗଳ୍ପ ଯୁବକର ସ୍ତ୍ରୀ-ନିର୍ବାଚନ । ଠିକ୍ ଏହିପରି ଯୁବତୀ ମଧ୍ୟ ସ୍ୱାମୀ-ନିର୍ବାଚନ କରେ । ସେ ଯାହାକୁ ମନେ ମନେ ସ୍ୱାମୀ ରୂପେ ବରଣ କରେ, ହଠାତ୍ ଦିନେ ଗୋଧୂଳି ବେଳାରେ ତାହାର ଘରେ ପହଞ୍ଚିଯାଏ । ବରର ମାତା ତାହା ଦେଖି ରାଗରେ ଗର୍ଜିଉଠେ ଏବଂ ସେହି କନ୍ୟାକୁ ନାନା କୁକଥା କହି ଗାଳିଦିଏ; ଏପରିକି ଗୁଣ୍ଡୁଣିମୁଠାରେ ପିଟି ତାକୁ ଘରୁ ତଡ଼ିଦେବାକୁ ବସେ । ସେଥିରେ ଯେବେ କନ୍ୟାଟି ଗଲା ନ ଯାଏ, ତାହାହେଲେ ତା ନାକରେ ପୋଡ଼ା ଲଙ୍କାମରିଚର ଧୂଆଁ ଦିଆଯାଏ । ଏତେ ଶାସ୍ତି ସହି ମଧ୍ୟ କନ୍ୟାଟି ଯଦି ସେହି ଘରେ ପଡ଼ିରହେ, ତେବେ ବୁଝିବାକୁ ହୁଏ ଯେ, ତାହାର ପ୍ରତିଜ୍ଞା ଅଟଳ ଏବଂ ସେ ଅନ୍ୟ କାହାକୁ କଦାପି ବିବାହ କରିବ ନାହିଁ । ଏହାପରେ ଶାଶୁର ରାଗ ଥମିଯାଏ ଏବଂ କନ୍ୟାଟିକୁ ବୋହୂ କରିବାକୁ ସେ ରାଜି ହୁଏ । ପୂର୍ବେ ହିମାଳୟକନ୍ୟା 'ଗୌରୀ' ଯେପରି ମହାଦେବଙ୍କୁ ପତିରୂପେ ପାଇବାପାଇଁ ବହୁ କଷ୍ଟ ସହି କଠୋର ତପସ୍ୟା କରିଥିଲେ, ହୋ ଯୁବତୀର ଏହି ସଙ୍କଳ୍ପ ଓ କଷ୍ଟ ଠିକ୍ ସେହିପରି ।

ସ୍ୱାମୀ-ସ୍ତ୍ରୀମଧ୍ୟରେ କଳି କଜିଆ ମନ-ଛଡ଼ାଛଡ଼ି ଘଟିଲେ 'ଗୁଡ଼ପଣ' ଦେବାର ପ୍ରଥା ହୋ ସମାଜରେ ଅଛି । ବିବାହସମ୍ପର୍କ କଟିଗଲେ ସ୍ୱାମୀ ଓ ସ୍ତ୍ରୀ ନିଜ ଇଚ୍ଛାମତେ ଅନ୍ୟକୁ ବିବାହ କରି-ପାରନ୍ତି । ଏହି 'ଦୁତିଅ' ହେବାକୁ ସେମାନେ 'ସଙ୍ଗା' କହନ୍ତି । ବିଧବା ବିବାହ ମଧ୍ୟ ସେମାନଙ୍କ ମଧ୍ୟରେ ବେଶ୍ ଚଳେ । ସ୍ୱାମୀହରା ଭଉଜ ତାର ଦିଅରକୁ ବିବାହ କରେ । ଦେଢ଼ଶୁରକୁ ବିବାହ କରିବା ହୋ ସମାଜରେ ଏକାବେଳେ ମନା ।

ଘାସି ଜାତିର ବୁଢ଼ୀମାନେ ହୋ ନାରୀମାନଙ୍କର ଛୁତିକଆ-ବେଳେ ଧାଈର କାର୍ଯ୍ୟ କରନ୍ତି । ପିଲା ଜନ୍ମିବା ପରେ ପ୍ରସୂତି ଓ

ତାର ସ୍ୱାମୀ ତିନ ଦିନ ଅଶୌଚ ପାଳନ୍ତି । ଏହି ସମୟରେ ସ୍ୱାମୀ ରନ୍ଧାବଢ଼ା କରି ତାର ସ୍ତ୍ରୀକୁ ଖାଇବାକୁ ଦିଏ । ଚତୁର୍ଥ ଦିନ ସ୍ତ୍ରୀ ନଖ ଆଦି କାଟି ଏବଂ ସ୍ୱାମୀ କେଶ, ଦାଢ଼ି, ନଖ କାଟି ଶୁଦ୍ଧ ହୁଅନ୍ତି । ନବମ ଦିନ ଗୋଷ୍ଠର ସମସ୍ତ ଜ୍ଞାତିକୁଟୁମ୍ବ ଏକାଠି ବସି 'ହାଣ୍ଡିଆ' ଖାଆନ୍ତି । ଠିକ୍ ଏକ ମାସ ପୂରିଲେ ଅଶୌଚକାଳ ପୂର୍ଣ୍ଣପୂର୍ଣ୍ଣ ଶେଷ ହୋଇଯାଏ ।

ହୋମାନଙ୍କ ମତରେ ଏକପ୍ରକାର ଦୁଷ୍ଟ ଭୂତ ଅଛନ୍ତି । ସେହି ଭୂତ ସୁବିଧା ପାଇ କାହାରି ଦେହରେ ପ୍ରବେଶ କଲେ ସେ ରୋଗରେ ପଡ଼େ । ଏପରି ଘଟିଲେ ଗୁଣିଆ ଡକାଯାଏ । ସେ ଆସି ମନ୍ତ୍ର ପଢ଼ି ରୋଗୀର ଦେହରୁ ଭୂତ କାଢ଼ିନିଏ । ତାପରେ ରୋଗୀର ରୋଗ ଛାଡ଼ିଯାଏ ।

'ସିଂବୋଙ୍ଗା'ଙ୍କ ଛଡ଼ା ଆହୁରି ଅନେକ ଦେବଦେବୀଙ୍କୁ ହୋମାନେ ପୂଜା କରନ୍ତି । ଅଗ୍ନି ମାସରେ ମାଘେ ପର୍ବରେ ସିଂବୋଙ୍ଗାଙ୍କ ପୂଜା ଖୁବ୍ ଆଡ଼ମ୍ବରରେ କରାଯାଏ । ପାହାଡ଼ପର୍ବତର ଦେବତାଙ୍କୁ ହୋମାନେ 'ମାରଂବୋଙ୍ଗା' କହନ୍ତି । ସେ ସାଧାରଣତଃ ଅରୁଆ ଗୁଡ଼ଳରେ ସନ୍ତୁଷ୍ଟ ହୋଇଥାନ୍ତି । କେହି କେହି ତାଙ୍କୁ ହିନ୍ଦୁଦେବତା କୈଳାସବାସୀ ମହାଦେବ ବୋଲି ବିଶ୍ୱାସ କରନ୍ତି । 'ଗରାମ' ଆଉ ଗୋଟିଏ ଦେବତା । ପ୍ରତି ମାସରେ ତାଙ୍କର ପୂଜା ହୁଏ । ଦେବୀମାନଙ୍କ ମଧ୍ୟରେ 'ମନସା' ଦେବୀ ଓ 'ଜାଏରବୁଢ଼ୀ' ଅର୍ଥାତ୍ 'ଗ୍ରାମଦେବୀ' ପ୍ରଧାନ । ମାରଂବୋଙ୍ଗାଙ୍କ ଛଡ଼ା ପ୍ରାୟ ସବୁ ଦେବଦେବୀଙ୍କ ପାଖରେ ପୂଜାବେଳେ କୁକୁଡ଼ା ଓ ଛେଳି ବଳି ପଡ଼େ । ଏହା ସହିତ ହାଣ୍ଡିଆ ମଧ୍ୟ ନୈବେଦ୍ୟ ଦିଆଯାଏ ।

ହୋମାନେ କୃଷି ଉପରେ ବେଶୀ ନିର୍ଭର କରୁଥିବାରୁ ସେମାନଙ୍କର ଅଧିକାଂଶ ପର୍ବ ଓ ଉତ୍ସବ କୃଷିପାଇଁ ହୋଇଥାଏ ।

ଧାନବୁଣାଠାରୁ ଧାନକଟା ପର୍ଯ୍ୟନ୍ତ ବିଭିନ୍ନ ମାସରେ ସେମାନେ ବିଭିନ୍ନ ପର୍ବ ପାଳନ କରନ୍ତି । ଫଗୁଣ ମାସରେ 'ବାହା' ପର୍ବ ପଡ଼େ । ଏଥିରେ ଗ୍ରାମଦେବୀଙ୍କୁ ପୂଜା କରାଯାଏ । ସେଠାରେ ଯେଉଁ କୁକୁଡ଼ା-ସବୁ ବଳି ପଡ଼ଥାନ୍ତି, ସେମାନଙ୍କ ରକ୍ତ ଲାଗିଥିବା ଫୁଲସବୁ ଆଣି ଗ୍ରାମବାସୀମାନେ ନିଜ ନିଜ ଘରେ ରଖନ୍ତି । ତିନି ଦିନପର୍ଯ୍ୟନ୍ତ ଏହି ପର୍ବ ପାଳିତ ହୁଏ । ପ୍ରତି ଘରର ଗୃହିଣୀ ସ୍ୱତନ୍ତ୍ର ହାଣ୍ଡିରେ ଅରୁଆ-ଭାତ ରାନ୍ଧେ ଓ ବଣଭୋଜି କରେ । ତାହାକୁ ବାଢ଼ି ସେ ଲକ୍ଷ୍ମୀ ଠାକୁରାଣୀଙ୍କୁ ପୂଜା କରେ ଏବଂ ତାଙ୍କ ଦୟାରୁ ଧାନ ଫସଲ ଭଲ ହେବ ବୋଲି ଭକ୍ତିରେ ମୁଣ୍ଡିଆ ମାରେ ।

ଏହାପରେ ପଡ଼େ 'ହେରବ' ପର୍ବ । ଧାନବୁଣା ଶେଷ ହେବା ସଙ୍ଗେ ସଙ୍ଗେ ଏହା ଅନୁଷ୍ଠିତ ହୁଏ ଏବଂ ତିନି ଦିନପର୍ଯ୍ୟନ୍ତ ଲାଗି-ରହେ । ପ୍ରଥମ ଦିନ ଘରଦ୍ୱାର ଲିପାପୋଛା ହୁଏ । ଦ୍ୱିତୀୟ ଦିନ ଗ୍ରାମବାସୀମାନେ ଏକାଠି ମିଳି ପୂଜା କରନ୍ତି । ପୂଜାସ୍ଥାନକୁ ସେମାନେ 'ଜେମରନ୍‌ବୋ' କହନ୍ତି । ତୃତୀୟ ଦିନ ସ୍ତ୍ରୀ ପୁରୁଷ ବାଳକ-ବାଳିକା ସମସ୍ତେ ମିଶି ମାଦଳ ବଜାନ୍ତି, ଗୀତ ଗାଆନ୍ତି, ନାଚନ୍ତି ଓ ଖିଆପିଆ କରନ୍ତି ।

ଶ୍ରାବଣ ମାସର ଗହ୍ମାପୂର୍ଣ୍ଣିମାରେ ଏକ ବଡ଼ ଉତ୍ସବ ହୁଏ । ଇନ୍ଦ୍ର ଦେବତା ସମୟ ଜାଣି ପାଣି ଦେବାପାଇଁ କେତେ ପୂଜା ପାଆନ୍ତି । ତାଙ୍କ ଉଦ୍ଦେଶ୍ୟରେ ସେମାନେ ବଳି ଦିଅନ୍ତି ଏବଂ ତାହାକୁ ରାନ୍ଧି ପ୍ରସାଦରୂପେ ଖାଆନ୍ତି ।

ଧାନକଟାବେଳେ ପୁଣି ଏକ ପର୍ବ ପାଳିତ ହୁଏ । ସବୁ ବିଲର ଧାନ କଟା ହୋଇଗଲେ କ୍ଷେତଲକ୍ଷ୍ମୀଙ୍କୁ ପୂଜା କରି ସେମାନେ ଉତ୍ସବରେ ମାତନ୍ତି । ଧାନଅମଳ ଆରମ୍ଭ ହେବା ପରେ

ସେମାନେ ପୁଷପର୍ବ ପାଳନ କରନ୍ତି । ଏହାପରେ 'ନୂଆଖିଆ' ପର୍ବ ବା 'ଜମ୍‌ନାମା' । ସେହି ଦିନ ସମସ୍ତଙ୍କ ଘରେ ଖୀରି ଖେଚେଡ଼ି ହୋଇ ନୂଆ ଖିଆଯାଏ । ଏଗୁଡ଼ିକ ଛଡ଼ା ମାଘପର୍ବ ଓ ଚୈତପର୍ବରେ ମଧ୍ୟ ହୋମାନେ ହାଣ୍ଡିଆ ଖାଇ ଓ ଶିଙ୍ଗା, ମାଦଳ ବଜାଇ ନାଚ, ଗୀତ, ଭୋଜରେ ମାତିଉଠନ୍ତି ।

ପ୍ରତ୍ୟେକ ପର୍ବରେ ଗାଁଏ ଗାଁଏ ଆନନ୍ଦର ବନ୍ୟା ଖେଳିଯାଏ । ସବୁରି ପ୍ରାଣ ଆଷାଢ଼ର ଗିରିସ୍ରୋତ ପରି ଚଞ୍ଚଳ ହୋଇଉଠେ । ସେମାନଙ୍କ କଣ୍ଠରୁ ସଙ୍ଗୀତର ଲହରୀ ଛୁଟେ—

"ହେସାମାଡା ମାଡାଲେନା ବାଡ଼ୀମାଡା ମାଡାଲେନା,
ଠିକ ସମୟେ ରେଜା ତୁଇମ ସେମେରେନା,
ହେସାମାଡା ଚବଜନା, ବାଡ଼ୀମାଡା ଚବଜନା,
ସମାଗେଜା ତୁଇମ ବଦଲେକେନା ।"

ଏହି ଗୀତଟି ଧାଡ଼ିମଧ୍ୟରେ ଯେଉଁ ସୁନ୍ଦର ମନକଥାଟିଏ ଖଞ୍ଜି ଦିଆଯାଇଛି, ତଳ ଅନୁବାଦଟିରୁ ତାହା ବେଶ୍ ଜାଣି ହେବ :

"ଓସ୍ତ ଫଳର ରମ୍ଭା ଫଳର
ମୃଦୁଳ ମହକ ପାଇ
ଆସିଛ ତ, କହ ଶିଆଳବନ୍ଧୁ !
ପାଚିଛି ସେ କବା ନାହିଁ ।
ଯେବେ ହେ ବନ୍ଧୁ ! ସରିଯିବ ଗନ୍ଧ
ପାଚିଲେ ସେ ଫଳଗୁଣି,
ଲଭିଯିବ ତୁମ ଓଠରୁ ହାସ୍ୟ,
ବୃଥା ଫେରିଯିବ ଆସି ।"

# ପ୍ରଶ୍ନ

୧ । ହୋମାନେ କ୍ଷେତରେ ଭଲ ଚାଷ ହେବାପାଇଁ ଯେଉଁସବୁ ପର୍ବ ପାଳନ କରନ୍ତି, ସେଗୁଡ଼ିକ ବିଷୟରେ ଯାହା ଜାଣିଲ, ସଂକ୍ଷେପରେ ବର୍ଣ୍ଣନ କର ।

୨ । ହୋ ଆଦିବାସୀଙ୍କର ଯେଉଁ ଗୀତଟି ପଢ଼ିଲ, ତହିଁରେ କି ମୂଳକଥା ଅଛି, ବୁଝାଇଦିଅ ।

୩ । ହୋ କନ୍ୟାର ସ୍ୱାମୀ-ନିର୍ବାଚନ ବିଷୟଟି ତୁମ ନିଜ ଭାଷାରେ ଲେଖ ।

୪ । ହୋମାନଙ୍କର ବିଭିନ୍ନ ଦେବଦେବୀଙ୍କ ନାମ କହ ।

# କୋମ କୁକ

ଭାରତ ଓ ବ୍ରହ୍ମଦେଶର ମିଳନସ୍ଥଳରେ 'ମଣିପୁର' ଅଞ୍ଚଳ ଅବସ୍ଥିତ । ଏହା ଭାରତର ଉତ୍ତର-ପୂର୍ବ ସୀମାର ଦ୍ୱାର ପରି । ନେତାଜୀ ସୁଭାଷଚନ୍ଦ୍ର ଭାରତମାତାଙ୍କୁ ପରାଧୀନତା-ବେଡ଼ିରୁ ମୁକ୍ତ କରିବାପାଇଁ ଏବଂ ଇଂରେଜମାନଙ୍କୁ ଭାରତବର୍ଷରୁ ତଡ଼ିଦେବା ପାଇଁ ୧୯୪୩ ମସିହାର ଅକ୍ଟୋବର ୨୩ ତାରିଖ ଦିନ ବ୍ରିଟିଶ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ତାଙ୍କର ବିରାଟ 'ଆଜାଦ୍ ହିନ୍ଦ୍ ବାହିନୀ' ୧୯୪୪ ମସିହାର ମାର୍ଚ୍ଚ ୧୮ ତାରିଖ ଦିନ ଯେତେବେଳେ ମଣିପୁରର ସୀମାରେ ଆସି ପହଞ୍ଚିଲା, ସେତେବେଳେ ନେତାଜୀ ସେହି ସୈନ୍ୟଦଳକୁ ଉଦ୍‌ବୋଧନ ବାଣୀ ଶୁଣାଇଥିଲେ ।

"ହେ ସ୍ୱଦେଶର ମୁକ୍ତିକାମୀ ସୈନ୍ୟଗଣ ! ଅତି ଶୀଘ୍ର ଏହି ମଣିପୁର ସୀମା ନିକଟି ଜନ୍ମଭୂମି-ବକ୍ଷରେ ଆମକୁ ସ୍ୱାଧୀନତାର ତ୍ରିରଙ୍ଗ ପତାକା ଉଡ଼ାଇବାକୁ ହେବ । ତାପରେ ଆମର ଯାତ୍ରା ଆରମ୍ଭ ହେବ ଦିଲ୍ଲୀ ଅଭିମୁଖରେ । ସର୍ବଶେଷ ଇଂରେଜଟି ଭାରତ-ଭୂମିରୁ ଚାଲି ନ ଯିବା ପର୍ଯ୍ୟନ୍ତ ଆମ ଯାତ୍ରାର ଶେଷ ନାହିଁ । ଦିଲ୍ଲୀର 'ଲାଲକିଲ୍ଲା'ରେ ଯେଉଁ ଦିନ ଆମର ବିଜୟପତାକା ଉଡ଼ିବ, ଯେଉଁ ଦିନ ଆମର ଏଇ ମୁକ୍ତିଫୌଜ ପ୍ରାଚୀନ ଲାଲ-କିଲ୍ଲାରେ ବିଜୟ-ଉତ୍ସବରେ ମାତିଉଠିବ, ସେହି ଦିନ ହିଁ ଆମର ଯାତ୍ରା ଶେଷ ହେବ ।"

ନେତାଜୀ ସୁଭାଷଚନ୍ଦ୍ରଙ୍କର ଏହି ସ୍ୱାଧୀନତା-ସ୍ୱପ୍ନ ୧୯୪୭ ମସିହାରେ ଅଗଷ୍ଟ ୧୫ ତାରିଖ ଦିନ ବାସ୍ତବରେ ସଫଳ ହେଲା । ସେହି ଦିନ ଭାରତ ସ୍ୱାଧୀନ ହେଲା ଏବଂ ବ୍ରିଟିଶ ସରକାର

ଭାରତବାସୀଙ୍କ ହାତରେ ସମସ୍ତ ଶାସନକ୍ଷମତା ସମର୍ପିଦେଇ ନିଜ ଦେଶକୁ ଚାଲିଗଲେ । ନେତାଜୀଙ୍କ ସ୍ୱାଧୀନତା-ସଂଗ୍ରାମର ପ୍ରଥମ ରଣକ୍ଷେତ୍ର ଏହି ମଣିପୁର ପ୍ରତ୍ୟେକ ଭାରତୀୟର ଚକ୍ଷୁରେ ଅତି ଗୌରବମୟ । ବ୍ରିଟିଶ ରାଜତ୍ୱକାଳରେ ମଣିପୁର ଗୋଟିଏ ରାଜ୍ୟ ଥିଲା ଏବଂ ଜଣେ ରାଜାଙ୍କଦ୍ୱାରା ଶାସିତ ହେଉଥିଲା । ଭାରତ ସ୍ୱାଧୀନତା ଲାଭ କଲା ପରେ ହିମାଚଳ ପ୍ରଦେଶ, ଦିଲ୍ଲୀ, ତ୍ରିପୁରା ପ୍ରଭୃତି ଅନ୍ୟ ଛଅଟି ଅଞ୍ଚଳ ପରି ଏହା ମଧ୍ୟ ଏକ କେନ୍ଦ୍ରଶାସିତ ଅଞ୍ଚଳରେ ପରିଣତ ହୋଇଛି ।

ମଣିପୁର ଗଭୀର ଜଙ୍ଗଲରେ ପୂର୍ଣ୍ଣ । ତେଣୁ ଆଧୁନିକ ସଭ୍ୟତାର ଆଲୋକ ତାହା ମଧ୍ୟରେ ପଶିପାରି ନାହିଁ । ସେଠାରେ ଯେଉଁ 'ଲଗଟାଗ' ହ୍ରଦ ଅଛି, ତାହାର ଚାରିପାଖରେ 'ନାଗା', 'କୁକି' ଆଦି କେତୋଟି ଜାତିର ଅସଂଖ୍ୟ ଆଦିବାସୀ ବାସ କରନ୍ତି । ସେମାନଙ୍କ ମଧ୍ୟରେ କୁକିମାନଙ୍କ ସଂଖ୍ୟା ସବୁଠାରୁ ବେଶୀ ।

କୁକିମାନେ 'କୋମ', 'ଲୁଶେଇ', 'ଚରୁ', 'ପୁରୁମ', 'ଭାଇପେଇ' ପ୍ରଭୃତି ଅନେକ ଶ୍ରେଣୀରେ ବିଭକ୍ତ । ଏହି ପ୍ରତ୍ୟେକ ଶ୍ରେଣୀର ଆଦିବାସୀ ଏକ ମୂଳ ସଂପ୍ରଦାୟର ଅନ୍ତର୍ଗତ ହେଲେହେଁ ଏମାନଙ୍କ ଆଚାରବ୍ୟବହାର ଓ ରୀତିନୀତିରେ ଢେର୍ ପ୍ରଭେଦ ଦେଖାଯାଏ । ଶାରୀରିକ ଗଠନ ଓ ଆକାରପ୍ରକାରରେ ମଧ୍ୟ ଏକ ଶ୍ରେଣୀର କୁକି ଅନ୍ୟ ଶ୍ରେଣୀର କୁକିଙ୍କଠାରୁ ଭିନ୍ନ । କୋମ କୁକି-ମାନଙ୍କ ଆକୃତି ସାଧାରଣତଃ ଖର୍ବ । ଏମାନଙ୍କ ନାକ ଚଉଡ଼ା, ମୁହଁ ଗୋଲ, ମୁଣ୍ଡ ଚଟକା ଓ ବାଳ କରଡ଼ା ।

ଏମାନେ 'କୋମ' ଭାଷାରେ କଥାବାର୍ତ୍ତା କରନ୍ତି । ତାହା ତିବ୍ବତ-ବର୍ମୀୟ ଭାଷାପରି । 'କୋମ' ଶବ୍ଦର ଅର୍ଥ 'ପର୍ବତ' । ଏହି

ଶ୍ରେଣୀର କୁକ ଆଦିବାସୀମାନେ ପୂର୍ବେ ସର୍ବଦା ମୁଣ୍ଡରେ ପଗଡ଼ି ଭିଡ଼ିରଖୁଥିଲେ; ଏଥିପାଇଁ ନିଜକୁ 'କୋମ କୁକ' ରୂପେ ପରିଚିତ କରାଇଛନ୍ତି ଏବଂ ନିଜ ଭାଷାକୁ 'କୋମ ଭାଷା' ନାମ ଦେଇଛନ୍ତି ।

କୋମ କୁକମାନେ ନିଜକୁ ମଣିପୁରର ଆଦିମ ଅଧିବାସୀ ବୋଲି ସ୍ୱୀକାର କରନ୍ତି ନାହିଁ । ଏହି ସମାଜମଧ୍ୟରେ ବହୁ କାଳରୁ ଧାରଣା ହୋଇଆସିଛି ଯେ, ଏମାନଙ୍କ ପୂର୍ବପୁରୁଷମାନେ ପ୍ରଥମେ 'ଲୁସାଇ' ପାହାଡ଼ର ନିମ୍ନ ଦେଶରେ ବାସ କରି ରହିଥିଲେ । ତାହାହିଁ ସେମାନଙ୍କର ଆଦି ଜନ୍ମସ୍ଥାନ । କୌଣସି କାରଣରୁ ସେହି ଜନ୍ମଭୂମି ଛାଡ଼ି ସେମାନେ ମଣିପୁରର ବନଭରା ଶ୍ୟାମଳ ପ୍ରଦେଶକୁ ଚାଲି-ଆସିଥିଲେ । ସେହିଦିନୁଁ ମଣିପୁର ସେମାନଙ୍କର ବାସଭୂମି ହେଲା ।

ବନମଧ୍ୟରେ କୋମ କୁକମାନେ ଦଳ ବାନ୍ଧି ଗୋଟିଏ ଗୋଟିଏ ଗ୍ରାମରେ ରହିଥାନ୍ତି । ପ୍ରତ୍ୟେକ ଗ୍ରାମର ସ୍ୱତନ୍ତ୍ର ନାମ ଅଛି, ଯଥା— କାଇବୁଂ, କରେଣ୍ଟୋ, କାଇରାପ ଇତ୍ୟାଦି । ପ୍ରତି ଗ୍ରାମରେ ଜଣେ ଲେଖାଏଁ ଦଳପତି ଥାଏ । ତାହାର ବୁଦ୍ଧିମତା ଉପରେ ଗ୍ରାମର ସୁଖ-ଦୁଃଖ, ଭଲ-ମନ୍ଦ ବା ହାନି-ଲାଭ ନିର୍ଭର କରେ । ସେହି ଦଳ-ପତିର ନାମ 'କୁଲକପା' । ତାହାକୁ ବିଭିନ୍ନ କାର୍ଯ୍ୟରେ ସାହାଯ୍ୟ କରିବାପାଇଁ ଜଣେ ସହକାରୀ ମଧ୍ୟ ରହିଥାଏ । ତାର ନାମ 'ଲୁକାଲ୍‌କପା' ।

ଏ ଦୁହିଙ୍କ ବ୍ୟତୀତ ସମସ୍ତ ଗ୍ରାମବାସୀଙ୍କର ଜଣେ ପୁରୋହିତ ଥାଏ । ଏକ ଗ୍ରାମର ପୁରୋହିତ ଅନ୍ୟ ଗ୍ରାମରେ ପୁରୋହିତ କରିବାକୁ ଯାଏ ନାହିଁ । ଏହି ପୁରୋହିତର ନାମ 'ମାକୋ' । ସେ ଯାବତୀୟ ଦେବଦେବୀଙ୍କର ପୂଜା କରେ । କୋମ କୁକମାନେ ତା ପ୍ରତି ଖୁବ୍ ସମ୍ମାନ ଦେଖାନ୍ତି ।

ଏହି ଆଦିବାସୀମାନଙ୍କର ସର୍ବଶ୍ରେଷ୍ଠ ଦେବତାଙ୍କ ନାମ 'ପାଥେନ' । ତାହାଙ୍କୁ ଏମାନେ ସୃଷ୍ଟି କର୍ତ୍ତା ଭଗବାନ ବୋଲି ମନେ କରନ୍ତି । ପାଥେନଙ୍କ ଛଡ଼ା କୋମ କୁକିମାନଙ୍କର ଅନ୍ୟାନ୍ୟ ଦେବଦେବୀ ମଧ୍ୟ ଅଛନ୍ତି । ପାଥେନ ଲୋକମାନଙ୍କୁ ଖୁବ୍ ସ୍ନେହ କରନ୍ତି ସେମାନଙ୍କର ଦୁଃଖ ବୁଝନ୍ତି ଏବଂ ବିପଦରୁ ସେମାନଙ୍କୁ ଉଦ୍ଧାର କରନ୍ତି, ଏହା କୋମ କୁକି ସମାଜର ବିଶ୍ୱାସ । ଏମାନଙ୍କର ମତରେ



[ କୋମ କୁକି କୃଷୀଦଳ ]

ସ୍ୱର୍ଗ ଓ ନରକ ଉଭୟ ଅଛି । ମନୁଷ୍ୟ ସତ୍‌ପଥରେ ଚାଲି ଭଲ କାର୍ଯ୍ୟ କଲେ ମୃତ୍ୟୁପରେ ସ୍ୱର୍ଗରେ ସ୍ଥାନ ପାଏ ଏବଂ କୁପଥରେ ଚାଲି ପାପକର୍ମ କଲେ ନରକରେ ଯାଇ ଦୁଏ, ଏହା କୋମ କୁକିମାନଙ୍କର ଦୃଢ଼ ଧାରଣା ।

କୋମ କୁକିମାନେ କୃଷିଜୀବୀ । କୃଷିହିଁ ଏମାନଙ୍କ ଜୀବନଯାତ୍ରାର ଏକମାତ୍ର ଅବଲମ୍ବନ । ଗ୍ରୀଷ୍ମଦିନେ ଏମାନେ ଜଙ୍ଗଲ ସଫା କରି କ୍ଷେତ ତିଆରି କରନ୍ତି । ଟ୍ରେଞ୍ଚ କୋଦାଳଦ୍ୱାରା ଜମିକୁ ସମତଳ କରି ତହିଁର

ଗୃହପଟେ ହିଡ଼ ଟେକିଦିଅନ୍ତି । ବର୍ଷାଋତୁରେ ପାହାଡ଼ରୁ ଜଳସ୍ରୋତ ବହିଆସେ । ସେହି ଜଳକୁ ଗୃହୀମାନେ ନିଜ ନିଜ କ୍ଷେତରେ ଅଟକାଇ ରଖି ଚାଷ କାର୍ଯ୍ୟରେ ଲଗାନ୍ତି । ଫଳରେ ଫସଲ ଭଲ ହୁଏ ଏବଂ ଧାନ, ମୁଗ, ଚଣା ଆଦି ଯଥେଷ୍ଟ ଆମଦାନୀ କରାଯାଏ । ତହିଁରେ ଏମାନଙ୍କର ବର୍ଷଟିର ଖର୍ଚ୍ଚ ବେଶ ଚଳିଯାଏ ।

ଭାତ କୋମ କୁକ ସମାଜର ପ୍ରଧାନ ଖାଦ୍ୟ । ଏମାନେ ଘରେ ଗାଈ ପାଳନ୍ତି ଏବଂ ସେମାନଙ୍କୁ ଦେବୀରୂପେ ପୂଜା କରନ୍ତି । ଗୋମାତା ନ ଥିଲେ ଘରୁ ଲକ୍ଷ୍ମୀଦେବୀ ଚାଲିଯାନ୍ତି ବୋଲି କୋମ କୁକ-ମାନଙ୍କର ବିଶ୍ୱାସ । ଆଶ୍ଚର୍ଯ୍ୟ କଥା, ଏମାନେ ଆଦୌ କ୍ଷୀର ପିଅନ୍ତି ନାହିଁ କିମ୍ବା ତହିଁରେ କ୍ଷୀରି ପ୍ରଭୃତି କୌଣସି ଖାଦ୍ୟ ପ୍ରସ୍ତୁତ କରନ୍ତି ନାହିଁ । ଅନେକେ କ୍ଷୀରକୁ ଗୋମାତାଙ୍କର ରକ୍ତ ବୋଲି ମନେ କରନ୍ତି ।

କୋମ କୁକମାନେ ବନମଧ୍ୟରୁ ନାନାପ୍ରକାର ଫଳମୂଳ ଆଣି ସେଗୁଡ଼ିକୁ ତରକାରି କରି ଖାଆନ୍ତି । ଏହାଛଡ଼ା ନିଜ ନିଜ ବାଡ଼ିରେ ଶାକସବ୍ଜିର ଫସଲ ମଧ୍ୟ କରନ୍ତି । ସମୟ ସମୟରେ ଜଙ୍ଗଲରୁ ଜୀବଜନ୍ତୁ ଶିକାର କରି ସେମାନଙ୍କ ମାଂସକୁ ତରକାରି କରନ୍ତି ।

ଏମାନେ ଶବକୁ ନ ପୋଡ଼ି ଗାତ ଖୋଳି ତହିଁରେ ପୋତି ଦିଅନ୍ତି । ଆତ୍ମୀୟର ମୃତ୍ୟୁରେ କୁଟୁମ୍ବଲୋକ ଓ ଗ୍ରାମବାସୀମାନେ ଶୋକ କରନ୍ତି । କି ପୁରୁଷ କି ନାରୀ ସମସ୍ତେ ତିନ ଦିନ ପର୍ଯ୍ୟନ୍ତ ଅଶୌଚ ପାଳନ୍ତି । ତାହାପରେ ଶୁଦ୍ଧ ହୋଇ ଯେ ଯାହାର କାର୍ଯ୍ୟରେ ଲାଗନ୍ତି ।

ଏମାନଙ୍କ ସମାଜର ବିବାହ ରୀତି ଅନ୍ୟାନ୍ୟ ଆଦିବାସୀ ସମାଜର ବିବାହ ରୀତିଠାରୁ ସମ୍ପୂର୍ଣ୍ଣ ପୃଥକ୍ । ବରର ପିତା କୌଣସି କନ୍ୟାକୁ ମନେ ମନେ ପସନ୍ଦ କରିସାରିବାପରେ କନ୍ୟାଘରକୁ ଯାଏ ।

ସେ ଗୋଟିଏ ଶୂକର ଓ ବୋତଲେ 'ଜୁ' ସଙ୍ଗରେ ନେଇଥାଏ । ଦେଶୀ ମଦକୁ କୋମ ଭଷାରେ 'ଜୁ' ବୋଲାଯାଏ । ବରପିତା ଏହି 'ଜୁ' ଓ ଶୂକରକୁ ଗ୍ରହଣ କରିବାପାଇଁ କନ୍ୟାପିତାକୁ ଅନୁରୋଧ କରେ । କନ୍ୟାପିତା ଯଦି ତାହା ଗ୍ରହଣ କରେ, ତାହାହେଲେ ସେ କନ୍ୟାଦାନ କରିବାରେ ରାଜି ଅଛି ବୋଲି ଜଣାପଡ଼େ । ସେ ଯେବେ ତାହା ଗ୍ରହଣ ନ କରେ, ତେବେ ବରପିତାର ପୁଅକୁ ଜୋଇଁ କରିବାରେ ତାର ଇଚ୍ଛା ନାହିଁ ବୋଲି ସ୍ପଷ୍ଟ ଜଣାପଡ଼ିଯାଏ । ଯେଉଁ-ଠାରେ କନ୍ୟାପିତା ରାଜି ହୁଏ, ସେଠାରେ ସଙ୍ଗେ ସଙ୍ଗେ ବିବାହର ସମସ୍ତ ଚୁକ୍ତି ହୋଇଯାଏ ।

ଏପ୍ରକାର ବିବାହରେ ବରପକ୍ଷକୁ କନ୍ୟାପଣ ଦେବାକୁ ପଡ଼େ । ଦୁଇଟି ଗାଈ, ଗୋଟିଏ ମଇଁଷି ଓ ଚାରି ବୋତଲ 'ଜୁ', ସାଧାରଣତଃ ଏତିକ ହେଉଛି କନ୍ୟାପଣ । ଅନ୍ୟାନ୍ୟ ଯୌତୁକ ବିବାହଦିନ ଦୁଇ ପକ୍ଷର ମୁରବିମାନଙ୍କଦ୍ୱାରା ସ୍ଥିର କରାଯାଏ ।

ବିବାହପାଇଁ ତିଥି ବା ବାର ନିର୍ଦ୍ଦିଷ୍ଟ ନ ଥାଏ । ଇଂରାଜୀ ଜୁନ ମାସର ଯେକୌଣସି ଦିନ ବିବାହକାର୍ଯ୍ୟ ହୋଇପାରେ । ଜୁନ ମାସ ବ୍ୟତୀତ ଅନ୍ୟ ମାସରେ ବିବାହ ଉତ୍ସବ ହେବାର ନିୟମ ନାହିଁ । ବରର ପିତାମାତା ଓ କୁଟୁମ୍ବଲୋକେ କନ୍ୟାର ଘରକୁ ଯାଆନ୍ତି । ସେହିଠାରେ ବିବାହକାର୍ଯ୍ୟ ହୁଏ । ବରଘରର ବନ୍ଧୁବାନ୍ଧବମାନେ ମଧ୍ୟ ବରଯାତ୍ରୀ ହୋଇ ସେହି ବିବାହ ଉତ୍ସବରେ ଯୋଗ ଦିଅନ୍ତି ।

ପୁରୋହିତ ଆସି ଅତି ସଂକ୍ଷେପରେ ବିବାହକର୍ମ ଶେଷ କରିଦିଏ । ସେ ଚୁଲିରେ ଗୋଟିଏ କୁକୁଡ଼ାର ଗଳା କାଟିଦେଇ କୁକୁଡ଼ାଟିକୁ ଦୂରକୁ ଫିଙ୍ଗିଦିଏ । କୁକୁଡ଼ାଟି ଛଟପଟ ହୋଇ ମରିଯିବାବେଳେ ଯଦି ତାର ଗୋଡ଼ଦୁଇଟି ଯୋଡ଼ି ହୋଇଯାଇଥାଏ,

ତେବେ ବିବାହପରେ ସ୍ୱାମୀ-ସ୍ତ୍ରୀର ଖୁବ ମନମେଳ ରହିବ ବୋଲି ଜଣାଉଛନ୍ତି । ଆଉ ଯେବେ କୁକୁଡ଼ାଟିର ଦୁଇ ଗୋଡ଼ ଛଡ଼ା ଛଡ଼ା ହୋଇଯାଏ, ତାହାହେଲେ ସ୍ୱାମୀ-ସ୍ତ୍ରୀମଧ୍ୟରେ ମନ-ଛଡ଼ ଛଡ଼ ହେବାର ସୂଚନା ମିଳେ ।

ଏହାପରେ ଗୋଟିଏ ମାଟିପାତ୍ର 'ଜ୍'ରେ ପୂର୍ଣ୍ଣ ହୋଇ ବିବାହସ୍ଥାନକୁ ଆସେ । ବର ଓ କନ୍ୟା ସେହି ମଦକୁ ଦୁଇଟି ନଳ ସାହାଯ୍ୟରେ ଆନନ୍ଦରେ ପିଇଦିଅନ୍ତି । ଏହାହିଁ ହେଉଛି ବିବାହର ପ୍ରଧାନ ଅଙ୍ଗ ।

ଏହାର ଠିକ୍ ପରେ ପରେ ସ୍ତ୍ରୀ-ପୁରୁଷମାନଙ୍କର ନାଚଗାନ ଆରମ୍ଭ ହୋଇଯାଏ । ତିନ ଦିନପର୍ଯ୍ୟନ୍ତ ଉତ୍ସବ ଚାଲେ । ଖୁବ୍ ଭୋଜଭାତ ହୁଏ । ଶେଷରେ କନ୍ୟାଟି ବୋହୂ ସାଜି ସ୍ୱାମୀ ସହିତ ଯାଏ ଏବଂ ଶାଶୁଘରେ ତାର ପହିଲି ସଂସାର ଗଢ଼େ ।

କୋମ ଲୋକମାନଙ୍କ ମଧ୍ୟରୁ ଅନେକଙ୍କ ଦେହର ରଙ୍ଗ ଗାଢ଼ କଳା । ପୁଣି ଅନ୍ୟମାନଙ୍କ ରଙ୍ଗ ବେଶ୍ ସଫା । ନାରୀମାନଙ୍କ ଦେହର ବର୍ଣ୍ଣ ପୁରୁଷମାନଙ୍କ ବର୍ଣ୍ଣଠାରୁ ଯଥେଷ୍ଟ ଗୋରା । ପୁଣି ଅନେକ ନାରୀ ଚମ୍ପାଗୋରୀ । ମୋଟଉପରେ କାହାରି ଚେହେରା କାହାରି ସହିତ ମିଳେ ନାହିଁ ।

କୋମ କୁକି ସମ୍ପ୍ରଦାୟର ଲୋକଙ୍କ ମଧ୍ୟରେ ଏହିସବୁ ପାର୍ଥକ୍ୟ ରହିଥିବାରୁ ପଣ୍ଡିତମାନେ କହନ୍ତି ଯେ, କୋମ କୁକିମାନଙ୍କ ଦଳରେ ବିଭିନ୍ନ ଜାତିର ଲୋକ ମିଶିଯାଇଥିବାରୁ କାଳକ୍ରମେ ସେମାନେ ବର୍ଣ୍ଣସଙ୍କର ବା ବାରମିଶା ହୋଇଯାଇଛନ୍ତି । ଯେ ଯାହାହେଉ, ଏହି ଆଦିବାସୀମାନଙ୍କ ରକ୍ତରେ ଯେ ପ୍ରାଚୀନ କକେସୀୟ ରକ୍ତ ଏବେ ମଧ୍ୟ ଏହିଛି, ଏଥିରେ ସନ୍ଦେହ ନାହିଁ ।




୧ । ନେତାଜୀ ସୁଭାଷଙ୍କ 'ଆଜାଦ୍ ହିନ୍ଦ୍ ବାହିନୀ' କଣ ? ଏହା କାହିଁକି ଗଢ଼ା ଯାଇଥିଲା ?

୨ । କୋୟା କୁଳମାନେ ପ୍ରଥମେ କେଉଁଠି ଥିଲେ ? ପରେ କେଉଁଠାରୁ ସେମାନେ ଆସିଲେ ?

୩ । ସେମାନଙ୍କ ଗୃହ ପ୍ରଣାଳୀ ବିଷୟରେ କଣ ଜାଣିଲ କହ ।

୪ । ସେମାନଙ୍କ ସମାଜରେ କିପରି ବିବାହ ପ୍ରଥା ଅଛି ?

୫ । ବିବାହ ସ୍ଥାନରେ ପୁରୋହିତ କାହିଁକି ଗୋଟିଏ କୁକୁଡ଼ାର ଗଳା ଚିପି ଫୋପାଡ଼ିଦିଏ ?

୬ । କୋୟା କୁଳ ସମ୍ପ୍ରଦାୟର ଲୋକଙ୍କ ମଧ୍ୟରେ ବର୍ଣ୍ଣ ଓ ଭେଦଭାବରେ ପାର୍ଥକ୍ୟ ଦେଖାଯାଏ କାହିଁକି ?

୭ । ଭୁଲ୍ ଥିଲେ ସଂଶୋଧନ କରିଦିଅ :—

(କ) ଜଳକୁ କୋୟା କୁଳମାନେ 'ଜୁ' କହନ୍ତି ।

(ଖ) କୋୟା କୁଳ ନାରୀମାନଙ୍କ ରଙ୍ଗ ପୁରୁଷଙ୍କ ରଙ୍ଗଠାରୁ କଳା ।

(ଗ) ଜୁଲାଇ ମାସ ଛଡ଼ା ଅନ୍ୟ ମାସରେ ସେମାନଙ୍କର ବିବାହ ହୁଏ ନାହିଁ ।

———

# ଆନ୍ଦାମାନୀ

ଦିନ ଥିଲା, ଯେତେବେଳେ 'କଳାପାଣି' ଶବ୍ଦ ଶୁଣିଲାମାତ୍ରେ ମଣିଷର ଦେହ.ଭୟରେ ଥରଉଠୁଥିଲା । ଯାବଜ୍ଜୀବନ ନିର୍ବାସନ ଦଣ୍ଡ ପାଇଲେ ଦୋଷୀମାନେ ଏହି 'କଳାପାଣି' ଦ୍ୱୀପକୁ ପ୍ରେରିତ ହେଉଥିଲେ । ସେମାନଙ୍କ ଭାଗ୍ୟରେ ସ୍ୱଦେଶକୁ ଫେରିବାର ସୁଯୋଗ ଆଦୌ ଘଟୁ ନ ଥିଲା । ଜୀବନ-ଦୀପ ଲିଭିବାପର୍ଯ୍ୟନ୍ତ ସେହିଠାରେ ସେମାନଙ୍କୁ ଅଭିଶପ୍ତ ପରି ଜୀବନ କଟାଇବାକୁ ପଡ଼ୁଥିଲା ।

ବେଶୀ କାଳର କଥା ନୁହେଁ । ଦୁଇ ଶହ ବର୍ଷ ତଳେ ବ୍ରିଟିଶ-ମାନେ ଆସି ଏ ଦେଶରେ ସାମ୍ରାଜ୍ୟବିସ୍ତାର ଆରମ୍ଭ କଲେ । ସେତେବେଳେ ପ୍ରତିବାଦ କରି ଯେଉଁ ଭାରତୀୟମାନେ ବ୍ରିଟିଶ-କେଶରୀର ଶାନ୍ତିଭଙ୍ଗ କରିଥିଲେ, ସର୍ବପ୍ରଥମେ ସେହିମାନଙ୍କୁ ଏ ଦ୍ୱୀପକୁ ନିର୍ବାସିତ କରାଯାଇଥିଲା । ଏହାରି ନାମ 'ଆନ୍ଦାମାନ' ।

ବଙ୍ଗୋପସାଗର ମଧ୍ୟରେ ଶିକୁଳି ଭଳି ପରସ୍ପର ଲଗା ହୋଇ ଶ୍ରେଣୀବଦ୍ଧ ବଡ଼ ଗୁଡ଼ିଏ ଦ୍ୱୀପ ଉତ୍ତରରୁ ଦକ୍ଷିଣ ଆଡ଼କୁ ଲମ୍ବି ରହିଛି । ଏହି ଦ୍ୱୀପଶ୍ରେଣୀର ନାମ 'ଆନ୍ଦାମାନ ଓ ନିକୋବର ଦ୍ୱୀପପୁଞ୍ଜ' । ଏହାର ଆୟତନ ଦୈର୍ଘ୍ୟରେ ପ୍ରାୟ ଦେଡ଼ଶହ ମାଇଲ ଏବଂ ପ୍ରସ୍ଥରେ କୋଡ଼ିଏ ମାଇଲ ବା କୌଣସି କୌଣସି ସ୍ଥାନରେ ତାଠାରୁ କିଛି କମ୍ ।

ଆଜି ଆମ ଦେଶରେ ବ୍ରିଟିଶ ଶାସନ ଆଉ ନାହିଁ । ତାର ପୂର୍ଣ୍ଣ ସମାଧି ଘଟିଛି । ଭାରତର ଶାସନ ଏବେ ଭାରତୀୟଙ୍କ ହାତରେ । ତାହା ସଙ୍ଗେ ସଙ୍ଗେ ଆନ୍ଦାମାନ ଓ ନିକୋବର ଦ୍ୱୀପପୁଞ୍ଜର ଭାଗ୍ୟ ମଧ୍ୟ ସମ୍ପୂର୍ଣ୍ଣ ବଦଳିଯାଇଛି । ଯେଉଁ ଆନ୍ଦାମାନ ଦିନେ

ଭାରତବାସୀଙ୍କ ଆଖିରେ ଘୋର ଆତଙ୍କର ନରକଭୂମି ଥିଲା, ଆଜି ସେହି ଦ୍ୱୀପଟି ବହୁ ଲୋକଙ୍କ ସମାଗମ ଯୋଗୁ ଏକ ବଳାପ-ଭୂମିରେ ପରିଣତ ହୋଇଛି ।

ଚାରିପାଖରେ ସମୁଦ୍ରର ଜଳରାଶି, ମଝିରେ ଆନ୍ଦାମାନ ଓ ନିକୋବର ଦ୍ୱୀପପୁଞ୍ଜ । ଉଚ୍ଚ ଲହରୀମାଳା ଦୂରରୁ ଛୁଟିଆସି ଉପକୂଳରେ ବାରମ୍ବାର ପିଟିହେଉଥାଏ । ଉଷାର ରକ୍ତିମା ସେହି ଲହରୀ ଉପରେ ଏକ ଅପୂର୍ବ ଶୋଭା ସୃଷ୍ଟି କରେ । ସମଗ୍ର ଦ୍ୱୀପପୁଞ୍ଜଟି ନିବିଡ଼ ବନରେ ପୂର୍ଣ୍ଣ । ମଝିରେ ମଝିରେ ପାହାଡ଼-ପର୍ବତର ଉଚ୍ଚ ଶିଖରମାନ ଶୂନ୍ୟକୁ ଭେଦକରି ଛିଡ଼ା ହୋଇଥିଲା ପରି ମନେହୁଏ ।

ବର୍ଷାଋତୁରେ ପ୍ରବଳ ଜଳସ୍ରୋତ ପର୍ବତ ଉପରୁ ଲମ୍ଫ ଦେଇ ନିମ୍ନଭୂମି ଉପରେ ପଡ଼େ । ବଜ୍ରରୁ ବଳି ସେହି ଭୀଷଣ ଶବ୍ଦରେ ଚାରିଆଡ଼ କମ୍ପିଉଠେ । ବିଷୁବରେଖାର ଖୁବ୍ ନିକଟରେ ଥିବାରୁ ଏହି ସୁନ୍ଦର ସ୍ଥାନଟିରେ ଗ୍ରୀଷ୍ମ ଓ ବର୍ଷାର ଲୁଚକାଳି ଖେଳ ବର୍ଷସାରା ଲାଗିରହିଥାଏ । ମନେହୁଏ, ଏହି ଦ୍ୱୀପପୁଞ୍ଜଟି ଯେପରି ପ୍ରକୃତିର ଗୋଟିଏ ବିଚିତ୍ର ଲୀଳାଘର ।

ବ୍ରିଟିଶଶାସନର ଲୋପ ପରେ ଆନ୍ଦାମାନ ଦ୍ୱୀପ ଭାରତ ଯୁକ୍ତରାଷ୍ଟ୍ରର ଅଧୀନକୁ ଆସିଲା । ପ୍ରଥମେ ଏହା ପଶ୍ଚିମ-ବଙ୍ଗ ସରକାରଙ୍କ ମାରଫତରେ କିଛି କାଳ ଶାସିତ ହେଲା । ଏବେ ଭାରତ ସରକାର ଏହାକୁ ନିଜର ପ୍ରତ୍ୟକ୍ଷ ଶାସନରେ ରଖିଛନ୍ତି । 'ପୋର୍ଟ ବ୍ଲେୟାର୍' ହେଉଛି ଆନ୍ଦାମାନର ରାଜଧାନୀ ଏବଂ ସବୁଠାରୁ ବଡ଼ ସହର ।

ଏହି ଦ୍ୱୀପଟିର ନାମ 'ଆନ୍ଦାମାନ' କିପରି ହେଲା ଏବଂ କିଏ କେଉଁବେଳେ ଏହାର ଏପରି ନାମକରଣ କରିଥିଲା, ଏପର୍ଯ୍ୟନ୍ତ

ଠିକ୍‌ରୂପେ ଜଣା ଯାଇନାହିଁ । ଏ ସମ୍ବନ୍ଧରେ ବିଭିନ୍ନ ଲୋକଙ୍କର ବିଭିନ୍ନ ମତ ଶୁଣାଯାଏ । 'ଆଣ୍ଡାମାନ' ଶବ୍ଦର ଅର୍ଥ ବିଷୟରେ ମଧ୍ୟ ସେହିପରି ଭିନ୍ନ ମତ ରହିଅଛି । କେହି କେହି କହନ୍ତି, 'ଆନ୍ଦାମାନ'ର ଅର୍ଥ 'ସୁନାର ଦ୍ୱୀପ' । ଆବିଷ୍କାରକ ମାର୍କୋପୋଲୋ ତାଙ୍କ ବିବରଣୀରେ ଏହି ଦ୍ୱୀପକୁ 'ଆନ୍ଦାମାନ' ବା 'ଆଗ୍‌ଡ଼ାମାନ' ନାମ ଦେଇଛନ୍ତି ଏବଂ ତାହାର ଅର୍ଥ 'ସୌଭାଗ୍ୟ' ବୋଲି ଲେଖିଛନ୍ତି ।

ବିଶାଳ ସମୁଦ୍ରବେଷ୍ଟିତ ଏହି କ୍ଷୁଦ୍ର ଦ୍ୱୀପରେ ପ୍ରଥମେ କେବେ ମନୁଷ୍ୟର ପାଦ ପଡ଼ିଲା, ତାହା ନିଶ୍ଚିତରୂପେ ଜାଣିହୁଏ ନାହିଁ । ଅନେକଙ୍କର ବିଶ୍ୱାସ, ପ୍ରାଚୀନ ଯୁଗରେ ବ୍ରହ୍ମର ଉପକୂଳ ସହିତ ଆନ୍ଦାମାନ ଦ୍ୱୀପ ସଂଯୁକ୍ତ ଥିଲା । ତେଣୁ ସେହି ପଥ ଦେଇ କୌଣସି ଦେଶର ଆଦିମ ଲୋକେ ଆନ୍ଦାମାନକୁ ଆସିବାର ସୁବିଧା ପାଇଲେ । ସେହି ଗୋଷ୍ଠୀଟି ଆନ୍ଦାମାନରେ ସ୍ଥାୟୀଭାବରେ ବସବାସ କରି ତାହାର ଅଧିବାସୀ ହୋଇଗଲେ ।

ଆଉ କେତେ କେହି କହନ୍ତି, ପୂର୍ବେ ଆଫ୍ରିକାରୁ ଯେଉଁ ଜାହାଜସବୁ ଆସୁଥିଲା, ସେଥିମଧ୍ୟରୁ କେତେକ ଜାହାଜ ଭାଙ୍ଗିଗଲା । ତହିଁରେ ଥିବା ଲୋକମାନେ ଆନ୍ଦାମାନରେ ଆସି ପହଞ୍ଚିଲେ । ସେହିମାନେ ହିଁ ଆଧୁନିକ ଆନ୍ଦାମାନବାସୀଙ୍କର ପୂର୍ବପୁରୁଷ । ଅନ୍ୟ କେତେକଙ୍କ ମତରେ ବ୍ରହ୍ମର ଉପକୂଳ କମ୍ବା ଆଉ ଶ୍ୟାମ୍ ଆଡ଼ୁ ଉତ୍ତର-ପୂର୍ବ ବାୟୁ ଯୋଗେ ନୌକାସବୁ ଭାସି ଭାସି ଆସି ଆନ୍ଦାମାନ ଉପକୂଳରେ ଲାଗିଲା । ସେହି ନୌକାମାନଙ୍କରେ ଥିବା ଲୋକେ ଆନ୍ଦାମାନର ପ୍ରଥମ ଅଧିବାସୀ ହେଲେ । ଯାହାହେଉ, ବହୁ ପୂର୍ବ ଯୁଗରୁ ଯେ ଆନ୍ଦାମାନରେ ଆଦିବାସୀମାନେ ରହିଛନ୍ତି, ଏଥିରେ କୌଣସି ସନ୍ଦେହ ନାହିଁ ।

ଆନ୍ଦାମାନର ଲୋକମାନଙ୍କୁ 'ଆନ୍ଦାମାନି' କୁହାଯାଏ । ଆନ୍ଦାମାନ ଆଦିବାସୀମାନେ ଦ୍ୱୀପଟିର ସବୁ ଅଞ୍ଚଳରେ ଯେତେଲଇ ହୋଇ ରହିଛନ୍ତି । ସେମାନେ ଖର୍ବକାୟ ଓ ହୃଷ୍ଟପୁଷ୍ଟ । ସେମାନଙ୍କ ବର୍ଣ୍ଣ ଧୂଆଁର ରଙ୍ଗପରି କଳା । ମୁହଁ ଓ ଦେହରେ ଲୋମ ନ ଥାଏ । ମୁଣ୍ଡର ବାଳ କୁଞ୍ଚୁକୁଞ୍ଚିଆ ଓ କଳା । ନାକର ମୂଳ ପୃଷ୍ଠ ଆଉ ସରୁ । ଓଠ ଅତ୍ୟନ୍ତ ମୋଟା ।



[ଆନ୍ଦାମାନର ଆଦିବାସୀ ଯୁବକ]

ଆନ୍ଦାମାନରେ ଯେତେ ସେଉଁଠି ଆଦିବାସୀ ଅଛନ୍ତି, ସମସ୍ତଙ୍କ ଚେହେରା ପ୍ରାୟ ଏକାପରି । ଏଥିରୁ ଅନୁମାନ କରଯାଏ ଯେ, ଏମାନଙ୍କ ପୂର୍ବପୁରୁଷ ନିଶ୍ଚୟ ଗୋଟିଏ ଜାତିର ଲୋକ ହୋଇଥିବେ ଏବଂ ସେମାନେ ବିଭିନ୍ନ ଦେଶରୁ ଭିନ୍ନ ଭିନ୍ନ ସମୟରେ ନ ଆସି କୌଣସି ଗୋଟିଏ ଦେଶରୁ ଏକ ସମୟରେ ଏଠାକୁ ଆସିଥିବେ ।

ଆକୃତି ସମାନ ହେଲେହେଁ ଆନ୍ଦାମାନୀମାନଙ୍କ ପ୍ରକୃତି
ସବୁଠାରେ ସମାନ ନୁହେଁ । ସ୍ଥାନଭେଦରେ ସେମାନଙ୍କ ଭାଷା ଓ
ସଂସ୍କୃତିରେ ମଧ୍ୟ ବେଶ୍ ପ୍ରଭେଦ ଦେଖାଯାଏ । ଦକ୍ଷିଣ-ଆନ୍ଦାମାନରେ
'ଜାରଓ୍ୱା' ନାମରେ ଯେଉଁ ଆଦିବାସୀ ଅଛନ୍ତି, ସେମାନଙ୍କ ପ୍ରକୃତି
ହିଂସ୍ରଜନ୍ତୁଙ୍କ ପ୍ରକୃତି ପରି ଅତି ଭୀଷଣ ଓ ନିର୍ଦ୍ଦୟ । ବିଷାକ୍ତ ଶର



[ବିଷାକ୍ତ ଶରହସ୍ତରେ 'ଜାରଓ୍ୱା' ଶିକାରୀ]

ମାରି ଜୀବଜନ୍ତୁ ଓ ମନୁଷ୍ୟମାନଙ୍କୁ ବଧ କରିବାରେ ସେମାନେ ଭାରି
ଆମୋଦ ପାଆନ୍ତି । ଏଥିପାଇଁ ଲୋକେ ସେମାନଙ୍କ ରହିବା ସ୍ଥାନର
ସୀମା ମାଡ଼ିବାକୁ ସୁଦ୍ଧା ସାହସ କରନ୍ତି ନାହିଁ ।

ଆନ୍ଦାମାନର ଆଦିବାସୀମାନେ ଜଙ୍ଗଲରେ ବାସ କରନ୍ତି ।
ଭଲ ଜାଗା ବାଛି ତହିଁରେ ସେମାନେ ଗଛଲତାର ଡାଳପତ୍ର

ବିଶ୍ରାଜିତଅନ୍ତି ଏବଂ ଜାଗାଟିକୁ ମନ୍ଦିର ପରି ସମତୁଲ କରି ସେହି ସ୍ଥାନରେ ବିଶ୍ରାମ କରନ୍ତି । ତାହାର ଉପରେ ସେମାନେ ଖୁବ୍ ଲଗାଲଗି ଭାବରେ ଧାଡ଼ି ବାନ୍ଧି କୁଡ଼ିଆସବୁ ତିଆରି କରନ୍ତି । ସେଠାରେ ଦଳେ ଆଦିବାସୀ ଏକାଠି ରହନ୍ତି । ଏହିପରି ଗୋଟିଏ ଦଳରେ ଖୁବ୍ ବେଶୀ ହେଲେ ପଚାଶ ଜଣ ଥାଆନ୍ତି । ଏହି ପ୍ରତ୍ୟେକ ଦଳକୁ 'ସ୍ଥାନୀୟ ଦଳ' ବୋଲାଯାଏ ।

କୌଣସି କୌଣସି ସ୍ଥାନୀୟ ଦଳର ଖୁବ୍ ଲମ୍ବା ଚଉଡ଼ା ଗୋଟିଏ ବଡ଼ କୁଡ଼ିଆ ଥାଏ । ତାହାର ବିଭିନ୍ନ କୋଠରୀରେ ଦଳଟିର ସବୁଲୋକ ରହିଥାନ୍ତି । ଉତ୍ସବପର୍ବ ଓ ନୃତ୍ୟଗୀତପାଇଁ ସେହି କୁଡ଼ିଆ ନିକଟରେ ଆଉ ଗୋଟିଏ ବଡ଼ ଘର ମଧ୍ୟ ରହିଥାଏ । ଗୋଟିଏ ସ୍ଥାନୀୟ ଦଳର ସମସ୍ତ ଲୋକ ସବୁବେଳେ ଗୋଟିଏ ସ୍ଥାନରେ ରହନ୍ତି । ଯେତେବେଳେ ଯେଉଁଠାକୁ ଯାଆନ୍ତି, ସମସ୍ତେ ଦଳ ବାନ୍ଧି ଏକତ୍ର ଯାଆନ୍ତି । ମୋଟ ଉପରେ ପ୍ରତ୍ୟେକ ଦଳରେ ଏକତା ପୂର୍ଣ୍ଣଭାବରେ ରହିଥାଏ ।

ସେମାନେ ଏପର୍ଯ୍ୟନ୍ତ କୃଷି ଦିଗରେ ଦୃଷ୍ଟି ଦେଇ ନାହାନ୍ତି; କାରଣ କୃଷିକାର୍ଯ୍ୟରେ ବନ୍ଧା ହୋଇ ରହିଲେ ମନଇଚ୍ଛା ଏଣେତେଣେ ବୁଲି ଆନନ୍ଦ ଉପଭୋଗ କରିହେବ ନାହିଁ । ଏଥିପାଇଁ ସେମାନେ ସ୍ୱାଧୀନ ଭାବରେ ବନର ଫଳମୂଳ ସଂଗ୍ରହ ଓ ପଶୁପକ୍ଷୀ ଶିକାରକୁ ନିଜର ଜୀବିକାରୂପେ ଆଦରି ନେଇଛନ୍ତି । କୁକୁର ବ୍ୟତୀତ ଅନ୍ୟ କୌଣସି ଜୀବ ଆଜିପର୍ଯ୍ୟନ୍ତ ସେମାନେ ପୋଷି ନାହାନ୍ତି । ତୀର-ଧନୁଦ୍ୱାରା ମାଛ ଶିକାର କରିବା ସେମାନଙ୍କର ଏକ ବିଶେଷତ୍ୱ । ଅନେକ ସମୟରେ ସେମାନେ ଏକପ୍ରକାର ତୀକ୍ଷ୍ଣ ବର୍ଚ୍ଛା ସାହାଯ୍ୟରେ ଅଗଭୀର ଖାଡ଼ିମାନଙ୍କରୁ ମାଛ ଧରନ୍ତି ।

ଅଣ୍ଡାମାନୀ ନାରୀମାନେ ଗଛର ପତ୍ରରୁ ଗୁଡ଼ି ଅଣ୍ଟାରେ ଗୁଡ଼ାଇ ଝୁଲାଇ ଦେଇଥାନ୍ତି । ପୁରୁଷମାନେ ମଧ୍ୟ ସେହିଭଳି କରନ୍ତି କମରରେ, ବେକରେ ଓ ବାହାରେ ବାନ୍ଧି ତଳକୁ ଲମ୍ବାଇଥାନ୍ତି । ସ୍ତ୍ରୀଲୋକମାନେ ହାତରେ ପିତଳବାହା ପିନ୍ଧନ୍ତି ଏବଂ ଶାମୁକାରେ ନାନାପ୍ରକାର ଗହଣା ତିଆରି କରି ବେକରେ, କାନରେ ପିନ୍ଧିବାକୁ



[ ଆଣ୍ଡାମାନୀ ବେଶଭୂଷା ]

ସୁଖ ପାଆନ୍ତି । ଅନେକେ ହାତ, ଗୋଡ଼ ଓ ଗୁଡ଼ରେ ଚିତା କୁଟାଇ ଦେହର ଶୋଭା ବଢ଼ାଇଥାନ୍ତି । ନାରୀଜାତିର ଏପ୍ରକାର ସୌଖ ନ ରୁଚିରେ ସ୍ଥାନେ ସ୍ଥାନେ ଏବେ ପରିବର୍ତ୍ତନ ଆସିଛି । ଛୋଟ ଛୋଟ ଶିଶୁମାନେ ପ୍ରାୟ ଲଙ୍ଗଳା ରହନ୍ତି ।

ଜଳପଥରେ ଯାତାୟାତ କରିବାପାଇଁ ଏବଂ ନଦୀ, ସମୁଦ୍ରରେ ଶିକାର କରିବାପାଇଁ ଆଣ୍ଡାମାନୀ ଆଦିବାସୀମାନେ ନୌକା ବ୍ୟବହାର କରନ୍ତି । ସେମାନେ ନିଜହାତରେ କାଠରୁ କ୍ଷୁଦ୍ର ନୌକା ତିଆରି କରିଥାନ୍ତି । ଅଧିକାଂଶ ସମୟରେ ସେମାନେ ଆହୁଲ ସାହାଯ୍ୟରେ ନୌକା ଚଳାଇ ସମୁଦ୍ରର କୂଳେ କୂଳେ ବହୁ ଦୂର ଚାଲିଯାନ୍ତି ।

ଆଣ୍ଡାମାନୀ ଆଦିବାସୀମାନଙ୍କର କୌଣସି ସରକାର ନାହିଁ । ସମାଜର ମୁରବିଲୋକଙ୍କ ନିର୍ଦ୍ଦେଶକୁ ସମସ୍ତେ ମାନିଥାନ୍ତି । ସେମାନଙ୍କର ସମାଜ ପିତୃପ୍ରଧାନ । ପୁରୁଷ ଲୋକେ ହିଁ ସବୁ ବିଷୟରେ କର୍ତ୍ତୃତ୍ୱ ଦେଖାଇଥାନ୍ତି । ସ୍ତ୍ରୀଲୋକମାନେ ସେମାନଙ୍କ ଶାସନରେ ଚଳନ୍ତି । ପୋଷ୍ୟପୁତ୍ର ଗ୍ରହଣ କରି ବଂଶ ରକ୍ଷାକରିବା ସେମାନଙ୍କ ସମାଜର ଏକ ଧରାବନ୍ଧା ନିୟମ । ଦଳ ଭିତରୁ ପୋଷ୍ୟ-ପୁତ୍ର ଗ୍ରହଣ କରିବାଦ୍ୱାରା ସେମାନଙ୍କ ମଧ୍ୟରେ ସମ୍ପର୍କ ଅଧିକ ଦୃଢ଼ ହୁଏ । ଏହାଫଳରେ ଦଳର ଏକତା ମଧ୍ୟ ଯଥେଷ୍ଟ ବଢ଼ିଯାଏ ।

ସବୁ ଦେଶର ସମାଜରେ ଗୋତ୍ର ଅଛି; ମାତ୍ର ଆଣ୍ଡାମାନୀ ସମାଜରେ କୌଣସି ଗୋତ୍ର ନାହିଁ । ଗୃହକର୍ତ୍ତା, ଗୃହିଣୀ ଓ ତାଙ୍କର ପୁତ୍ରକନ୍ୟା, ଏହି କେତେଜଣଙ୍କୁ ନେଇ ଗୋଟିଏ ପରିବାର ହୋଇ-ଥାଏ । ଏହିପରି କେତୋଟି ପରିବାର ମିଶି ଗୋଟିଏ 'ସ୍ଥାନୀୟ ଦଳ' ଗଢ଼ା ହୁଏ । ବିଭିନ୍ନ ସ୍ଥାନରେ ବିଭିନ୍ନ ସ୍ଥାନୀୟ ଦଳ ବସବାସ କରନ୍ତି । ସୁଖ-ଦୁଃଖ, ଭଲ-ମନ୍ଦ, ଭାବ-ଅଭାବ, ସବୁଥିରେ ଗୋଟିଏ ସ୍ଥାନୀୟ ଦଳର ଲୋକେ ପରସ୍ପର ସହିତ ଘନିଷ୍ଠ ସମ୍ବନ୍ଧ ରଖନ୍ତି । ଅନ୍ୟ କୌଣସି ସ୍ଥାନୀୟ ଦଳଠାରୁ ମନ୍ଦ ବ୍ୟବହାର ପାଇଲେ ସେମାନେ ଏକଜୁଟ ହୋଇ ଛୁଟିଯାନ୍ତି, ପ୍ରତିବାଦ କରନ୍ତି, ପ୍ରତିରୋଧ କରନ୍ତି, ଦରକାର ପଡ଼ିଲେ ପ୍ରତିଶୋଧ ମଧ୍ୟ ନିଅନ୍ତି । ଭେଦଭାବ ବା ମନୋମାଳିନ୍ୟ ସେମାନଙ୍କ ମଧ୍ୟରେ ଆଦୌ ଦେଖାଯାଏ ନାହିଁ ।

ଆନ୍ଦାମାନୀ ଆଦିବାସୀମାନେ ବେଶୀ ବୟସରେ ବିବାହ କରିବା ରୀତିକୁ ପସନ୍ଦ କରନ୍ତି । କେତେକ ସମୟରେ ଯୁବକମାନେ ଅନ୍ୟ ସ୍ଥାନୀୟ ଦଳର ଅବିବାହିତା କନ୍ୟାମାନଙ୍କ ସହିତ ସ୍ୱଇଚ୍ଛାରେ ବିବାହ କରିବାପାଇଁ ସ୍ଥିର କରିଦିଅନ୍ତି । ବୃଦ୍ଧମାନେ ତାହା ଶୁଣି ପ୍ରଥମେ ବିରକ୍ତ ହୁଅନ୍ତି ସତ; ମାତ୍ର ଶେଷରେ ତାହାର ସମର୍ଥନ କରନ୍ତି । ବିଧବା ଶାଳୀକୁ ଏବଂ ବଡ଼ଭାଇର ବିଧବା ସ୍ତ୍ରୀକୁ ବିବାହ କରିବା ଆନ୍ଦାମାନୀ ସମାଜ ଅନୁମୋଦନ କରେ । ଏହି ଦୁଇ ପ୍ରକାର ବିଧବାବିବାହ ଛଡ଼ା ଅନ୍ୟ କୌଣସି ପ୍ରକାର ବିଧବାବିବାହ ସେଠାରେ ଚଳେ ନାହିଁ ।

କୌଣସି ସ୍ଥାନୀୟ ଦଳ ମଧ୍ୟରୁ ଯଦି କେହି ମରିଯାଏ, ତାହାହେଲେ ସ୍ତ୍ରୀଲୋକମାନେ ପ୍ରଥମେ ସେହି ମୃତ ବ୍ୟକ୍ତିର ଶବପାଖକୁ ଆସି ଉଚ୍ଚ ସ୍ୱରରେ ବାହୁନନ୍ତି । କିଛି ସମୟ ପରେ ସେମାନେ ଶାନ୍ତ ହୋଇଗଲେ ପୁରୁଷମାନେ ଆସି ଖୁବ୍ ବଡ଼ପାଟିକରି କାନ୍ଦନ୍ତି । ସବାଶେଷରେ ଦଳର ବୟସ୍କ ଓ ପ୍ରବୀଣ ଲୋକେ ମୃତ ବ୍ୟକ୍ତିର ସମସ୍ତ ଅଙ୍ଗରେ ମାଟି ବୋଳିଦିଅନ୍ତି । ଏହାପରେ ସେଠାରେ ଥିବା ନାରୀମାନେ ଶବର କପାଳରେ ଧଳା ଓ ନାଲି ରଙ୍ଗର ତିଳକ ପିନ୍ଧାଇଦିଅନ୍ତି ।

ତିନି ଚାରି ଫୁଟର ଗାତଟିଏ ଏଥିମଧ୍ୟରେ ଖୋଳାହୋଇସରିଥାଏ । ଲୋକେ ଶବକୁ ନେଇ ସେହି ଗାତ ମଧ୍ୟରେ ପୂର୍ବମୁଖୀ କରି ଶୁଆଇଦିଅନ୍ତି । ଆନ୍ଦାମାନୀ ଲୋକଙ୍କର ବିଶ୍ୱାସ, ଶବର ମୁହଁକୁ ପୂର୍ବଦିଗକୁ ନ ରଖିଲେ ସୂର୍ଯ୍ୟଦେବ ଆଉ ପୂର୍ବ ଆକାଶରେ ଉଇଁବେ ନାହିଁ ।

ଅନ୍ୟ ଏକ ପ୍ରଣାଳୀରେ ମଧ୍ୟ ଶବସତ୍କାର କରାଯାଏ । ଗୋଟିଏ ବଡ଼ ଗଛର ବାର ଫୁଟ ଉଚ୍ଚ ଶାଖାରେ ଆନ୍ଦାମାନୀମାନେ କାଠ ଓ

ଦେଉଡ଼ି ସାହାଯ୍ୟରେ ମଞ୍ଚାଟିଏ ତିଆରି କରନ୍ତି । ତାହାରି ମଧ୍ୟରେ ଶବକୁ ଲୁଗାରେ ଘୋଡ଼ାଇ ରଖିଦିଆଯାଏ । ତା ପାଖରେ ମୃତ ବ୍ୟକ୍ତିର ବ୍ୟବହୃତ ଖଟ, ଧନୁ ଓ ଜଳପାତ୍ର ମଧ୍ୟ ରହେ । କେବଳ ପୁରୁଷମାନେ ଶବ ସହିତ ଯାଇଥାନ୍ତି ।

ଆମମାନଙ୍କ ସମାଜରେ ଦଶ ଦିନ ପର୍ଯ୍ୟନ୍ତ ଅଶୌଚ ପାଳନ କରାଯାଏ, ମାତ୍ର ଆନ୍ଦାମାନୀ ସମାଜରେ ଅଶୌଚର ଏପରି କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ । ମୂର୍ଦ୍ଦାରର ମାଂସ ପଚିସଢ଼ି ହାଡ଼ରୁ ଅଲଗା ହେଲେ ଯାଇ ଅଶୌଚକାଳ ଶେଷ ହୁଏ । ସେତେବେଳେ ଆତ୍ମୀୟ ଲୋକେ ଶବ ଦେହର ହାଡ଼, ମୁଣ୍ଡର ଖପୁରି ପ୍ରଭୃତିକୁ କାଢ଼ି ଆଣନ୍ତି ଏବଂ ନଦୀ ଜଳରେ ଧୋଇ ସଫା କରନ୍ତି । ବାଳକବାଳିକାମାନେ ମୃତ ବ୍ୟକ୍ତିର ଖପୁରି ଓ ମୁଖର ହାଡ଼ରେ ଲାଲ ରଙ୍ଗ ବୋଳିଦିଅନ୍ତି ଏବଂ ତାହାକୁ ଗଳାରେ ପିନ୍ଧି ବୁଲନ୍ତି । ଶିଶୁମାନେ ମରିଗଲେ ସେମାନଙ୍କୁ ଘରର ଚୁଲି ନିକଟରେ ପୋତିଦିଆଯାଏ । ପୂର୍ବପ୍ରକାରେ ସତ୍କାର କରିବା ଦରକାର ହୁଏ ନାହିଁ ।

ଆନ୍ଦାମାନରେ ଅନେକ ସମୟରେ ଝଞ୍ଜା ବହେ । ସେଠା ଆଦିବାସୀମାନଙ୍କର ଧାରଣା ଯେ, ଦୁଇଟି ଅପଦେବତା ଅଛନ୍ତି, ସେ ଦୁହେଁ ରାଗିଗଲେ ଝଞ୍ଜାରୂପ ଧରି ଦେଖାଦିଅନ୍ତି । ଏହି ଦୁଇ ଅପଦେବତାଙ୍କ ନାମ 'ବିଲିକୁ' ଓ 'ଟାରାଇ' । ଉତ୍ତର-ପୂର୍ବ ଦିଗରୁ ଯେଉଁ ଝଞ୍ଜା ବହେ, ତହିଁରେ ବିଲିକୁ ଥାଆନ୍ତି, ଆଉ ଦକ୍ଷିଣ-ପଶ୍ଚିମରୁ ବହୁଥିବା ଝଞ୍ଜାରେ ଟାରାଇ ଥାଆନ୍ତି । କୌଣସି ଲୋକ ନିଷିଦ୍ଧ ଆହାର ଖାଇଲେ କିମ୍ବା ମହମଫେଣା ପୋଡ଼ିଦେଲେ ଏହି ଅପଦେବତା ଦୁହେଁ ବେଶୀ ରାଗିଉଠନ୍ତି ବୋଲି ଆନ୍ଦାମାନୀମାନେ ବହୁ କାଳରୁ ବିଶ୍ୱାସ କରି ଆସିଛନ୍ତି ।

ଏହି ଆଦିବାସୀମାନେ ଭୂତପ୍ରେତ ମାନନ୍ତି । ଏମାନଙ୍କର ବିଶ୍ୱାସ ଯେ, ଆକାଶରେ ଜାତିଏ ଭୂତ ଅଛନ୍ତି, ସେହିମାନଙ୍କ ଯୋଗୁଁ ବିଜୁଳି ମାରେ, ବଜ୍ର ପଡ଼େ । ପୁଣି ସମୁଦ୍ରରେ ଏକପ୍ରକାର ପ୍ରେତ ଅଛନ୍ତି, ଯେଉଁମାନେ ଜଳରେ ଝଡ଼ ସୃଷ୍ଟି କରନ୍ତି ।

ମଣିଷମାନେ ମରିଗଲେ ପରେ ଭୂତ ପାଲଟିଯାନ୍ତି ଏବଂ ସେହି ଭୂତଦଳ ଗାଁଏ ଗାଁଏ ବୁଲି ରୋଗବ୍ୟାଧି ଘୁଞ୍ଚାଉଥାନ୍ତି, ଏହା ଆଣ୍ଡାମାନୀମାନଙ୍କର ବିଶ୍ୱାସ । ନିଶା ଚର୍ଚ୍ଚୁଥିବାବେଳେ ଏହି ଭୂତ-ମାନେ ଦଳ ଦଳ ହୋଇ ଆଦିବାସୀଙ୍କ କୁଡ଼ିଆ ପାଖରେ ଆସି ବୁଲନ୍ତି, କାହାରିକୁ ଏକୁଟିଆ ପାଇଲେ ସଙ୍ଗେ ସଙ୍ଗେ ତାର ଚୋଟି ଚିପିଦିଅନ୍ତି ଏବଂ ତାର ରକ୍ତ ପିଇଯାନ୍ତି । ଘରେ ନିଆଁ ଜଳୁଥିଲେ କିମ୍ବା ବାହୁରେ ମଣିଷହାଡ଼ର ଡେଙ୍ଗୁରିଆ ବନ୍ଧା ହୋଇଥିଲେ ଭୂତମାନେ ପାଖକୁ ଆସନ୍ତି ନାହିଁ ବୋଲି ଆଣ୍ଡାମାନୀମାନେ ଭାବନ୍ତି ।

ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଏମାନେ ପୂଜା କରନ୍ତି । ଏମାନଙ୍କ ମତରେ ସୂର୍ଯ୍ୟ ହେଉଛନ୍ତି ଚନ୍ଦ୍ରଙ୍କର ସ୍ତ୍ରୀ ଏବଂ ତାରାଗୁଡ଼ିକ ସେ ଦୁହିଙ୍କର ପୁଅଝିଅ । ସମସ୍ତ ପରିବାରଟି ଆଲୋକ ସୃଷ୍ଟି କରି ଶୂନ୍ୟରେ ଚତୁର୍ଦ୍ଦିଗକୁ ଖେଳାଇଦିଅନ୍ତି ।

ଆଗେ ଆଣ୍ଡାମାନର ଆଦିବାସୀମାନେ ଛୋଟ ଛୋଟ ପଥର-ଖଣ୍ଡକୁ ଅନେକ ବେଳଯାଏ ଘଷି ଧାରୁଆ କରିଦେଉଥିଲେ ଏବଂ ତହିଁରେ କୁରାଢ଼ି, କୁରାଢ଼ି ଓ ତୀରର ଫଳକ ଆଦି ତିଆରି କରୁଥିଲେ । ଏହାଛଡ଼ା ସମୁଦ୍ରରେ ଜାହାଜ ବୁଡ଼ିଗଲେ ତହିଁର ଯେଉଁସବୁ ଅଂଶ ଭାସିଆସି କୂଳରେ ଲାଗେ, ସେଥିରୁ ଲୁହା ଆଣି ସେମାନେ ନାନା-ପ୍ରକାର ଘରୋଇ ସରଞ୍ଜାମ ତିଆରି କରୁଥିଲେ ।

ଆଜିକାଲି ଆଣ୍ଡାମାନର ଅବସ୍ଥା ବଦଳିଯାଉଛି । ବହୁ ଲୋକ ସମାଗମ ଯୋଗୁଁ ସେଠାକୁ ନାନାପ୍ରକାର ଦ୍ରବ୍ୟ ଆମଦାନି ହେଉଛି । ତେଣୁ ଆଣ୍ଡାମାନିମାନଙ୍କ ଜୀବନଯାତ୍ରା ରୀତିରେ ମଧ୍ୟ ଯଥେଷ୍ଟ ପରିବର୍ତ୍ତନ ଆସିଛି ।

## ପ୍ରଶ୍ନ

୧ । ଆଣ୍ଡାମାନ ଦ୍ୱୀପର ପ୍ରାକୃତିକ ଶୋଭା ବର୍ଣ୍ଣନା କର ।

୨ । ଏହି ଦ୍ୱୀପକୁ ପ୍ରଥମେ ଲୋକେ କିପରି ଆସି ଏଠାର ଆଦିବାସିନ୍ଦା ହୋଇଥିଲେ ?

୩ । ଆଣ୍ଡାମାନିମାନେ କାହିଁକି କୃଷି କରନ୍ତି ନାହିଁ ?

୪ । 'ଜାରଓ୍ୱା' ଆଦିବାସୀଙ୍କ ବିଷୟରେ ଯାହା ଜାଣ କହ ।

୫ । ଆଣ୍ଡାମାନି ଆଦିବାସୀ ସମାଜରେ ଶବସତ୍କାର କିପରି ହୁଏ ?

୬ । 'ରକ୍ତ'ରୁ 'ରକ୍ତିମା' ହୁଏ । ସେହିପରି ତଳଲିଖିତ ଶବ୍ଦମାନଙ୍କରୁ ଯେଉଁ ଯେଉଁ ନୂଆ ଶବ୍ଦ ହେବ, ତାହା ଲେଖିଦିଅ ।
ରଙ୍ଗ, ନୀଳ, ଭଙ୍ଗ, ଜଡ଼, ଗୁରୁ, ଲଘୁ, ବଡ଼, ମହତ୍ ।

---

# ଓରାଓଁ

ଯେଉଁ ଆଡ଼କୁ ଦୃଷ୍ଟି ପକାଇବ, କେବଳ ଉଚ୍ଚନୀଚ ପ୍ରାନ୍ତର । ମଝିରେ ମଝିରେ ପଥରର ଶହ ଶହ ଢିପ ବା ମୁଣ୍ଡିଆ ପ୍ରହରୀ ଦଳ ପରି ମୁଣ୍ଡ ଟେକି ଠିଆ ହୋଇଛନ୍ତି । ଅସୁମାରି ନମ୍ର ଓ ଉନ୍ନତ ଗଛ ପତ୍ରଧ୍ ପରି ସେହି ଅଞ୍ଚଳକୁ ଘେରି ରହିଛନ୍ତି । ତାହାରି ମଧ୍ୟରେ ପୁଞ୍ଜି ପୁଞ୍ଜି ହୋଇ ଅସଂଖ୍ୟ କୁଡ଼ିଆ ଶୋଭାପାଏ ।

ଏ ହେଉଛି ଛୋଟନାଗପୁରର ପାହାଡ଼ିଆ ମୁଲକ । ଶୀତ-କାଳର ଶେଷ୍ କରଣରେ ସବୁଜ ଗଛପତ୍ର ସବୁ ଝିଲ୍‌ମିଲ ହୋଇଉଠେ । ଗହଳ ପତ୍ରଘର ଆମ୍ବଡ଼ାଳରେ ଲୁଚି ବସି କୋଇଲି ତାର କୁହୁ ତାନ ଗାଉଥାଏ । ଅସଂଖ୍ୟ ଗୁଣ୍ଡୁଚି ଆନନ୍ଦରେ ଶାଖାରୁ ଶାଖାକୁ ଡେଉଁଥାନ୍ତି । ଆମ୍ବବଉଳ ଓ ମହୁଲଫୁଲର ବାସନା ନେଇକରି ବସନ୍ତର ମଳୟ ପବନ ବୁଲିଆଡ଼େ ଖେଳିବୁଲୁଥାଏ । ପ୍ରକୃତିର ଏହି ରମଣୀୟ ରାଜ୍ୟଟି ଲକ୍ଷ ଲକ୍ଷ 'ଓରାଓଁ' ଆଦିବାସୀଙ୍କର ସ୍ୱାଧୀନ ଲୀଳାଭୂଇଁ ।

ଭାରତରେ ଓରାଓଁମାନଙ୍କର ମୋଟ ସଂଖ୍ୟା ଷୋଳ ଲକ୍ଷରୁ କମ୍ ନୁହେଁ । ଛୋଟନାଗପୁରର ପାହାଡ଼ିଆ ଅଞ୍ଚଳରେ ସେମାନଙ୍କ ସଂଖ୍ୟା ସବୁଠାରୁ ବେଶୀ । ଏହାଛଡ଼ା ଓଡ଼ିଶା, ବଙ୍ଗ, ଆସାମ, ବିହାର ଓ ଛତିଶଗଡ଼ର ବିଭିନ୍ନ ପାର୍ବତ୍ୟ ସ୍ଥାନରେ ମଧ୍ୟ ସେମାନେ ଏଠି ସେଠି ହୋଇ ବହୁ ସଂଖ୍ୟାରେ ରହିଛନ୍ତି । ଓରାଓଁମାନଙ୍କର କୌଣସି ଲିପି ନାହିଁ । ସେମାନେ ଦ୍ରାବିଡ଼ ଭାଷାରେ କଥାବାର୍ତ୍ତା କରନ୍ତି । ଐତିହାସିକମାନଙ୍କ ମତରେ ଦ୍ରାବିଡ଼ ଦେଶ ଅର୍ଥାତ୍ ଦକ୍ଷିଣ-ଭାରତ ଓରାଓଁମାନଙ୍କର ପ୍ରଥମ ବାସସ୍ଥାନ ଥିଲା । ସେଠାରୁ ପଳାଇଆସି ସେମାନେ ଛୋଟନାଗପୁରର ପାହାଡ଼ିଆ ଭୂଇଁରେ

ମୁଣ୍ଡାମାନଙ୍କର ପଟ୍ଟରାଣୀ ହୋଇ ରହିଲେ । ତାହା ପୂର୍ବରୁ କେବଳ ମୁଣ୍ଡା ଆଦିବାସୀମାନେ ଛୋଟନାଗପୁରରେ ଥିଲେ ।

ଓରାଓଁମାନେ ଗେଡ଼ା । ଏମାନଙ୍କର ନାକ ଛୋଟ ଆଉ ଚଉଡ଼ା, ଦେହର ରଙ୍ଗ କଳା, ମୁହଁରେ ଦାଢ଼ି ମାଶ ଅଳ୍ପ । ଏମାନଙ୍କର ମୁଣ୍ଡ ଲମ୍ବ ଓ ତହିଁରେ କଳା କୁଞ୍ଚକୁଞ୍ଚ ବାଳ ବହୁତ ଥିବାରୁ ବଡ଼ ସୁନ୍ଦର ଦିଶେ ।

ଓରାଓଁମାନଙ୍କ କୁଡ଼ିଆର ଅଳ୍ପ ଦୂରରେ ମୁଣ୍ଡା ଓ ହୋ ପ୍ରଭୃତି ଆଦିବାସୀ ରହିଛନ୍ତି । ସେମାନଙ୍କ ଆକୃତି ସହିତ ଓରାଓଁ-ମାନଙ୍କ ଆକୃତିର ଅନେକ ମେଳ ଥିବାର ଦେଖାଯାଏ । ଜଳବାୟୁର ପ୍ରଭାବ ଏଥିର ପ୍ରଧାନ କାରଣ ବୋଲି ଅନୁମାନ କରାଯାଏ ।

ଏମାନଙ୍କ ଗ୍ରାମଗୁଡ଼ିକ ବେଶୀ ବଡ଼ ନୁହେଁ । ମଝିରେ ଗୋଟିଏ ରାସ୍ତା ଏବଂ ତାର ଦୁଇ ପାଖରେ ସାହାଲ୍ ସାହାଲ୍ ହୋଇ କୁଡ଼ିଆମାନ ତିଆରି ହୋଇଥାଏ । ଘରସବୁର କାନ୍ଥ ମାଟିରେ ଗଢ଼ା ଏବଂ ତହିଁରେ ମୋଟେ ଝରକା ନ ଥାଏ । କେତେକ ଘର ଦୋଚାଳିଆ, ଆଉ କେତେକ ଚଉଚାଳିଆ । ସବୁଗୁଡ଼ିକ ଖପରରେ ଛପରାଣି ହୋଇଥାଏ । ପ୍ରତ୍ୟେକ ଘରର ବାରଣ୍ଡା ଖୁବ୍ ଚଉଡ଼ା ଆଉ ଲମ୍ବା । ତାହାକୁ ଘରଭଳି ବ୍ୟବହାର କରିବାପାଇଁ ତାର ଧାରମାନଙ୍କରେ ମାଟିର ଅଧାକାନ୍ଥ ଦିଆଯାଇଥାଏ । ପିଣ୍ଡାର ଏକ ପଟରେ ପିଣ୍ଡିଟିଏ ଗଢ଼ି ତହିଁରେ ସ୍ତ୍ରୀଲୋକେ ଢେଙ୍କିକାମ ଚଳାନ୍ତି । ମଝିରେ ଧାନ, ବିରି ଆଦି ରଖିବାକୁ ପୁଡ଼ୁଗ ଏବଂ ଲଙ୍ଗଳ, ଯୁଆଳି ପ୍ରଭୃତି କୃଷି ସରଞ୍ଜାମ ରଖାଯାଇଥାଏ । ତାହାର ପାଖରେ ଶୁଆବସା ଓ ଖିଆପିଆ କରିବାପାଇଁ କିଛି ସ୍ଥାନ ରହିଥାଏ । ପିଣ୍ଡାର ଅନ୍ୟ ପଟରେ ଗାଈ-ବଳଦ, ମଇଁଷି-ଛେଳି ଏବଂ ସେମାନଙ୍କ ଛୁଆଗୁଡ଼ିକ ରହନ୍ତି ।

ଓରାଓଁ ପରିବାରରେ ବିଶେଷ କିଛି ଆଡ଼ମ୍ବର ନାହିଁ । ଖଟ, ଚଉକି କାହାରି ନ ଥାଏ । ସମସ୍ତେ ମାଦୁର ବା ଶୀତଳପଟି ପାରି ଚଟାଣରେ ଶୁଅନ୍ତି । ଗୃହିଣୀମାନେ କାନ୍ଥର ବାହାର ପଟକୁ ଧଳା ଖଡ଼ିମାଟିରେ ଧୋବଲା କରି ତା ଉପରେ ଗେରୁମାଟିର ରଙ୍ଗରେ ନାନା ପ୍ରକାର ଝୋଟି ଓ ଚିତ୍ର ଆଙ୍କନ୍ତି । ସେଥିପାଇଁ ଘରଗୁଡ଼ିକ ଦୂରରୁ ବଡ ସୁନ୍ଦର ଦେଖାଯାଏ ।

ପ୍ରତ୍ୟେକ ଘରକୁ ଲାଗି ଗୋଟିଏ ଲେଖାଏଁ ବାଡ଼ି ରହିଥାଏ । ସେଥିରେ ମାଟିଆଳୁ, ବାଇଗଣ, ଲଙ୍କାମରିଚ, ପିଆଜ, ଶାଗ, କଖାରୁ, କାକୁଡ଼ି, ଭେଣ୍ଡି ପ୍ରଭୃତି ଫସଲ କରାଯାଏ । ତାହାଦ୍ୱାରା କୁଟୁମ୍ବର ତରକାରିଖର୍ଚ୍ଚ ଅଧେଇଦିନ ଚଳିଯାଏ ।

ଗୋଟିଏ ଓରାଓଁ ଗାଆଁରେ ତିରିଶରୁ ଚାଳିଶିଟିପର୍ଯ୍ୟନ୍ତ ଘର ଥାଏ । ଓରାଓଁମାନେ କମାର, କୁମ୍ଭାର, ଗଉଡ଼, ଡମ ପ୍ରଭୃତି କେତେ ଘର ଅଣଆଦିବାସୀଙ୍କୁ ମଧ୍ୟ ନିଜ ଗାଆଁରେ ସ୍ଥାନ ଦେଇଥାନ୍ତି । ସେମାନଙ୍କଠାରୁ ଅନେକ ସମୟରେ ସାହାଯ୍ୟ ମିଳେ । କମାରମାନେ ଲୁହାଜିନିଷ ଗଢ଼ି, କୁମ୍ଭାରମାନେ ହାଣ୍ଡିମାଠିଆ ତିଆରି କରି ଓରାଓଁମାନଙ୍କୁ ଯୋଗାନ୍ତି । ଗଉଡ଼ମାନେ ଗାଆଁର ଗୋରୁ, ମଇଁଷି ଚରାନ୍ତି । ଡମ ଜାତିର ଲୋକେ ଓରାଓଁମାନଙ୍କ ବ୍ୟବହାରପାଇଁ ଟୋକେଇ, କୁଲା, ପାଛିଆ ପ୍ରଭୃତି ବୁଣନ୍ତି ଏବଂ ଏମାନଙ୍କର ଉତ୍ସବ ପର୍ବରେ ଆସି ଢୋଲ, ମହୁରୀ ବଜାନ୍ତି । ଆମ ଅଞ୍ଚଳର ସେବକ ଜାତିଙ୍କ ପରି ଏହି ଅଣଆଦିବାସୀମାନେ ଓରାଓଁ-ମାନଙ୍କର ବହୁତ ଉପକାର କରୁଥିବାରୁ ସେମାନେ ପ୍ରତ୍ୟେକ ଓରାଓଁ ପରିବାରରୁ ପ୍ରତିବର୍ଷ କିଛି କିଛି ଧାନ ଓ ଅନ୍ୟାନ୍ୟ ଦ୍ରବ୍ୟ ପାଆନ୍ତି ।

ପ୍ରତି ଗାଆଁରେ ଦୁଇ ଶ୍ରେଣୀର ଓରାଓଁ ବାସ କରନ୍ତି । ସେମାନଙ୍କ ମଧ୍ୟରୁ କେତେକ 'ଭୂଇଁହାର' ଏବଂ ଆଉ କେତେକ 'ଜେଠରାୟତ' । ଭୂଇଁହାରମାନେ ସେଠାର ପ୍ରଥମ ଆଗନ୍ତୁକ । ପରେ ଜେଠରାୟତମାନେ ଅନ୍ୟାନ୍ୟ ଅଞ୍ଚଳରୁ ସେଠାକୁ ଆସିଥିଲେ । ଓରାଓଁ ଗ୍ରାମର ମୁରବିଙ୍କୁ 'ମହାତୋ' ବୋଲଯାଏ । ସେ ଗ୍ରାମର ସୁଖ-ଦୁଃଖ, ଭଲ ମନ୍ଦ, ସବୁ ବୁଝେ । ଆଗେ ଖଜଣା ନେବାକୁ ରାଜା ବା ଜମିଦାରଙ୍କର ପିଆଦା ଆସୁଥିଲେ । ମହାତୋ ଗ୍ରାମବାସୀଙ୍କଠାରୁ ଖଜଣା ଆଦାୟ କରି ତାକୁ ଦେଉଥିଲା । ସେଥିପାଇଁ ସେ କେତେକ ବଡ଼ା ନିଷ୍କର ଜମି ଭୋଗ କରୁଥିଲା; ମାତ୍ର ଏବେ ରାଜା, ଜମିଦାରଙ୍କ ଶାସନ ଲୋପ ପାଇଯାଇଥିବାରୁ ମହାତୋମାନଙ୍କଠାରୁ ସେସବୁ ନିଷ୍କର ଜମି ଛଡ଼ାଇ ନିଆଯାଇଛି । ତଥାପି ସେମାନେ ଗ୍ରାମବାସୀଙ୍କ ଉପରେ ଏପର୍ଯ୍ୟନ୍ତ ମୁରବିପଣ ଦେଖାଉଛନ୍ତି ଏବଂ ନିଜ ନିଜର ନାମ ସହିତ 'ମହାତୋ' ଉପାଧି ଯୋଗ କରି ରାଜ୍ୟହୀନ ରାଜା ପରି ନିଷ୍ଫଳ ଗୌରବ ଅନୁଭବ କରୁଛନ୍ତି ।

ଦୋଷାଦୋଷ ବିଚାର ଓ ଶାନ୍ତି ଶୃଙ୍ଖଳା ରକ୍ଷା କରିବାପାଇଁ ପ୍ରତି ଗ୍ରାମରେ ଗୋଟିଏ ଲେଖାଏଁ 'ପଞ୍ଚ' ଥାଏ । ବିଚାର ସମୟରେ ବାଦୀ ଓ ଆସାମୀ ଉଭୟ ପକ୍ଷର ଲୋକେ 'ପଞ୍ଚ' ଆଗରେ ଉପସ୍ଥିତ ହୁଅନ୍ତି ଏବଂ ଶପଥ ନେଇ ସାକ୍ଷ୍ୟ ଦିଅନ୍ତି । ଯେ ଦୋଷୀ ବୋଲି ସାବ୍ୟସ୍ତ ହୁଏ, ତାକୁ ଅର୍ଥଦଣ୍ଡ ଭୋଗିବାକୁ ପଡ଼େ । ପଞ୍ଚର ଆଦେଶାନୁସାରେ ଲୋକଙ୍କୁ ଡାକହାକ କରି ଆଣିବାପାଇଁ ଜଣେ 'ଗୁଡିଆ' ନିଯୁକ୍ତ ହୋଇଥାଏ ।

ଅଧିକାଂଶ ଓରାଓଁ ପୁରୁଷ ଗୋଟିଏ ଗୋଟିଏ ଧୋତି ଓ ଜାମା ପିନ୍ଧନ୍ତି । ସଭ୍ୟ ସମାଜର ଅନୁକରଣରେ ଏବେ ସେମାନେ ଦାମିକା ଧୋତି; କୁରୁତା, ଏପରିକି ଜୋତା ମଧ୍ୟ ବ୍ୟବହାର କଲେଣି ।

କେବଳ ବୁଢ଼ାମାନେ ଏପର୍ଯ୍ୟନ୍ତ ପୂର୍ବସ୍ୱାଭ ରଖିଆସିଛନ୍ତି । ସେମାନେ କଟିରେ ଖଣ୍ଡେ ଖଣ୍ଡେ ଲେଙ୍ଗୁଟି ବାନ୍ଧିଥାନ୍ତି ଏବଂ ମୁଣ୍ଡରେ ଗୋଟିଏ ଲେଖାଏଁ ପଗଡ଼ି ଭିଡ଼ିଥାନ୍ତି । ଛୋଟ ଛୋଟ ବାଳକ-ବାଳିକାଦଳ ଲଙ୍ଗଳା-ଲଙ୍ଗୁଳି ବେଶରେ ଏଣେତେଣେ ବୁଲୁଥାନ୍ତି ।



[ ଓରାଓଁ ରମଣୀ ]

ନାରୀମାନେ ଖଣ୍ଡିଏ ଖଣ୍ଡିଏ ଛୋଟ ଶାଢ଼ୀ ପିନ୍ଧନ୍ତି । ସେମାନେ ମୁଣ୍ଡରେ ଲୁଗା ଦିଅନ୍ତି ନାହିଁ ଏବଂ ପିନ୍ଧା ଶାଢ଼ୀର ଗୋଟିଏ ପାଖର

କାନକୁ ଅଣ୍ଟାରେ ଦୁଇ ତିନ ଘେର କରି ଗୁଡ଼ାଇଥାନ୍ତି । ଆଜିକାଲି ଅନେକ 'ଗ୍ରୁଁ' ଯୁବତୀ ଅନ୍ୟ ଦୁନିଆର ସମ୍ପର୍କରେ ଆସି ନୂଆ ନୂଆ ଢଙ୍ଗରେ ବେଶ ସଜାଇଲେଣି । ସେମାନେ ଲମ୍ବ ବେଣୀ ବାନ୍ଧି ପିଠି ଉପରକୁ ଛାଡ଼ିଦେଉଛନ୍ତି ଏବଂ ସେଥିରେ ସୁନ୍ଦର ବଣଫୁଲ ଓ ଚିରୁଣୀ ଖୋସୁଛନ୍ତି । ଆଜିକାଲିର ଗହଣା ପ୍ରତି ସେମାନଙ୍କର ଆଦର ବେଶୀ । ତମ୍ବାରେ କୁଣ୍ଡଳ ତିଆରି କରି ସେମାନେ କାନରେ ଦୋହଲାଉଛନ୍ତି । କେହି କେହି ପିତଳ ଓ ରୁପାର ଗହଣା ମଧ୍ୟ ପିନ୍ଧୁଛନ୍ତି । ପଇସାବାଲା ଘରର ସ୍ତ୍ରୀଲୋକଙ୍କ ଦେହରେ ଖୁବ୍ ବେଶୀ ନହେଲେ ଭରିଏ ଅଧଭରିଏ ସୁନାଗହଣା ଦେଖାଯାଇଥାଏ ।

ସେହି ପାହାଡ଼ିଆ ଭୂଇଁରେ ପୋଖରୀ ପ୍ରାୟ ନାହିଁ । ତା ବଦଳରେ ନାନା ସ୍ଥାନରେ ବଡ଼ ବଡ଼ ଚୂଆ ଥାଏ । ତାହାକୁ 'ଦାଣ୍ଡି' କହନ୍ତି । ଗ୍ରାମର ନାରୀମାନେ ପ୍ରତ୍ୟେକେ ଦୁଇ ତିନୋଟି ଲେଖାଏଁ କଳସୀ ନେଇ ଧାଡ଼ି ହୋଇ ଚୂଆକୁ ଯାଆନ୍ତି ଏବଂ ସବୁ କଳସୀରେ ପାଣି ଭରି ଗପ କରି କରି ଏକସଙ୍ଗରେ ଘରକୁ ଫେରନ୍ତି ବର୍ଷାଋତୁରେ ପାଟଜମିମାନଙ୍କରେ ରଙ୍ଗୁଡ଼, ନେଉଳ, ଦଣ୍ଡିକିରି ପ୍ରଭୃତି ଚିନାମାଛ ବହୁତ ପରିମାଣରେ ଜନ୍ମନ୍ତି । ସ୍ତ୍ରୀଲୋକେ ଗଡ଼ାଣିଆ ଜାଗା ଦେଖି କ୍ଷେତମାନଙ୍କର ହିଡ଼ ଠାଏ ଠାଏ କାଟିଦିଅନ୍ତି ଏବଂ ସେଠାରେ ବଜା, ମୁଗୁରା, ଖଇଞ୍ଚି ଆଦି ବସାନ୍ତି । ପାଣି ସେହି ବାଟ ଦେଇ ଗଡ଼ୁଥିବାବେଳେ ମାଛସବୁ ତହିଁରେ ଚାଲିଆସି ଏହି ମାଛଧରା ଯନ୍ତ୍ରମାନଙ୍କ ମଧ୍ୟରେ ପଶିଯାନ୍ତି । ଓରାଓଁ ତରୁଣୀମାନେ ଏହି ଉପାୟରେ ମାଛ ଧରିବାକୁ ଏକ ସୌଖୀନ କାର୍ଯ୍ୟ ମନେ କରନ୍ତି ।

ଓରାଓଁ ନାରୀମାନେ ମାଂସ ଖାଇବାକୁ ଭାରି ଭଲ ପାଆନ୍ତି । ସେଥିପାଇଁ ସେମାନେ ହଂସ, କୁକୁଡ଼ା, ଛେଳି ଆଦି ପୋଷିଥାନ୍ତି ।

ବେଳେବେଳେ ସେମାନେ ପୁରୁଷବେଶରେ ଜଙ୍ଗଲକୁ ଯାଇ ତୀର, ଧନୁ ଓ ବର୍ଚ୍ଛା ସାହାଯ୍ୟରେ ଶିକାର କରନ୍ତି । ବର୍ଷର ବଛାବଛା ସମୟରେ ଓରାଓଁ ରମଣୀମାନେ ଦଳ ଦଳ ହୋଇ ଶିକାର ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ଫଗୁଣ ମାସରେ ଶିକାରକୁ ଯିବାର ନାମ 'ଫାଗୁସେନ୍ଦ୍ରା' ଏବଂ ବୈଶାଖରେ ଶିକାରକୁ ଯିବାର ନାମ 'ବିଶୁସେନ୍ଦ୍ରା' । ମଝି ମଝି ସେମାନେ ପୁରୁଷବେଶରେ ଦୂର ଗାଆଁମାନଙ୍କୁ ଯାଆନ୍ତି ଏବଂ ବାଟରେ ଯାଉଁଠି ଯେଉଁଠି ଛେଳି, ମେଣ୍ଢା, କୁକୁଡ଼ା ଦେଖନ୍ତି, ଜବରଦସ୍ତି ସେଗୁଡ଼ିକୁ ନେଇଆସନ୍ତି । ଗାଆଁଲୋକେ ଭୟରେ ସେମାନଙ୍କୁ ପାଟି ଫିଟାଇ ମାରନ୍ତି ନାହିଁ ।

କୃଷି ଓରାଓଁମାନଙ୍କର ଏକମାତ୍ର ବୃତ୍ତି । ସେମାନେ ସାରା ଜୀବନ ଏହାରି ଉପରେ ନିର୍ଭର କରନ୍ତି । ପାହାଡ଼ତଳ ଖାଲ ଜମିମାନ ଚାଷ ପାଇଁ ବେଶ୍ ଉପଯୁକ୍ତ । ପାହାଡ଼ପାଣି ଫସଲକୁ ଖୁବ୍ ସାହାଯ୍ୟ କରେ । ତାହା ବ୍ୟତୀତ ଚୂଆଗୁଡ଼ିକରେ ବାରମାସ୍ ଜଳ ଥାଏ । ଦରକାରବେଳେ ଓରାଓଁମାନେ ସେହି ଚୂଆଜଳକୁ ଚାଷକାର୍ଯ୍ୟରେ ଲଗାନ୍ତି ।

ପୁରୁଷମାନେ କ୍ଷେତମାନଙ୍କୁ ହଳ କରି ବିହନ ବୁଣନ୍ତି । ଏଥିପାଇଁ ସ୍ତ୍ରୀମାନଙ୍କ ସାହାଯ୍ୟ ଆଦୌ ଆବଶ୍ୟକ ହୁଏ ନାହିଁ । ନାରୀମାନଙ୍କର କାର୍ଯ୍ୟ ଅଲଗା । ସେମାନେ ଭଲ ଫସଲ ଆବାଦ-ପାଇଁ ପାଉଁଶ ଓ ଗୋବରଖତ ପକାଇ କ୍ଷେତଜମିକୁ ଉର୍ବର କରନ୍ତି ଏବଂ ଧାନରୁଆ ଓ ଧାନକଟାରେ ପୁରୁଷମାନଙ୍କୁ ବିଶେଷ-ଭାବରେ ସାହାଯ୍ୟ କରନ୍ତି । ହେମନ୍ତଋତୁରେ କଅଁଳିଆ ସବୁ ପାଚିଲା ଧାନରେ ପୂର୍ଣ୍ଣ ହୋଇଯାଏ । ପରବାରରେ ସମସ୍ତେ ଧାନକଟାରେ ଲାଗିଯାନ୍ତି ଏବଂ ହଳାସବୁକୁ ବୋହିଆଣି ଖଳାରେ ଜମା କରିଦିଅନ୍ତି ।

ଭାଦରେ ଧାନବାଡ଼ଖିଆ ଆରମ୍ଭ ହୁଏ । ସେହି କାର୍ଯ୍ୟ ଶେଷ ହେଲେ ସେମାନେ ଅମଳ ଧାନକୁ ନେଇ ମରେଇରେ ରଖିଦିଅନ୍ତି ଏବଂ ବିହନ ଧାନକୁ ଓଳିଆ ବାନ୍ଧି ଘରେ ସାଇତି ରଖନ୍ତି ।



[ ଓରାଓଁ ଗୃହୀ ]

ଓରାଓଁ ସମାଜରେ ମଧ୍ୟ 'ଗୋତ' ଅଛି । 'ବରବଦାର' ଓ 'ଟୋପ୍ପୋ'ମାନଙ୍କପରି ବିଭିନ୍ନ ଜୀବଜନ୍ତୁ ଓ ଗଛଲତାଙ୍କ ନାମ ଅନୁସାରେ ଏମାନଙ୍କ ଗୋତର ନାମ ହୋଇଥାଏ । ସମାନ ଗୋତର ଗୋଷ୍ଠୀ-ମଧ୍ୟରେ ବିବାହ ସମ୍ବନ୍ଧ କରାଯାଏ ନାହିଁ । ଯଦି କୌଣସି ପୁରୁଷ

ସମାଜର ନିୟମ ଭାଙ୍ଗି ବିବାହ କଲେ, ତାହାହେଲେ ତାକୁ କଠିନ ଶାସ୍ତି ଦେଇ ଜାତିବାସନ୍ଦ କରିଦିଆଯାଏ । ଏହିପରି ସ୍ଥଳରେ ନିଆ ବନ୍ଦ ହୋଇଥିବା ପୁରୁଷ ଓ ସ୍ତ୍ରୀମାନଙ୍କ ବାସ ଛାଡ଼ି ଗାଆଁ ଗଣ୍ଡି ଦୂର ମୂଲକକୁ ଚାଲିଯାନ୍ତି ।

ଆଗକାଳରେ କନ୍ୟା ବେଶୀ ବୟସର ନ ହେଲେ ତାର ବିବାହ ହେଉ ନ ଥିଲା; କିନ୍ତୁ ଆଜିକାଲି ଅଧିକାଂଶ ପରିବାରର ଝିଅମାନଙ୍କୁ ଅଳ୍ପ ବୟସରେ ବିଭା କରିଦିଆଯାଉଛି । ଏହା ହିନ୍ଦୁ-ସମାଜର ପ୍ରଭାବ ଛଡ଼ା ଆଉ କିଛି ନୁହେଁ । କୌଣସି ଓଁରାଓଁର ପୁଅ ନ ଥିଲେ ସେ ଘରଜୋଇଁଆ କରିପାରିବାର ବିଧି ଏ ସମାଜରେ ଅଛି । କେବଳ ପୁଷ ଓ ମାଘ ଏଇ ଦୁଇ ମାସରେ ବିବାହଉତ୍ସବ ହୋଇଥାଏ । ଏହାକୁ 'ବେଞ୍ଜା' ଅର୍ଥାତ୍ 'ବିବାହମାସ' ବୋଲାଯାଏ । ବର ବା କନ୍ୟାର ଜନ୍ମବାରରେ ବିବାହ ହୁଏ ନାହିଁ ।

ପ୍ରଥମେ ବରର ବାପମାଆ ନିଜ ବନ୍ଧୁବାନ୍ଧବଙ୍କ ସହିତ କନ୍ୟା ପସନ୍ଦ କରିବାପାଇଁ ତା ଘରକୁ ଯାଆନ୍ତି । ଏମାନଙ୍କୁ କନ୍ୟାର ମାଆ ପାଦ ଧୋଇବାଲାଗି ପାଣି ଓ କିଛି 'ଖଇନି' ଦେଇ ସମ୍ମାନ ଦେଖାଏ । ଖଇନି କହିବାରେ ଧୂଆଁପତ୍ର ଆଉ ଶୁଖିଲା ଚୂନ ବୁଝାଏ । ଏ ଦୁଇଟିକୁ ବରପକ୍ଷର ଲୋକେ ଲେଣ୍ଟରେ ଧରି ନଳରେ ନ କନ୍ତି ଏବଂ ତାହାର କଡ଼ା ରସର ଆସ୍ୱାଦରେ ତୃପ୍ତ ହୁଅନ୍ତି । ତାପରେ କନ୍ୟାଦେଖା ହୁଏ । କନ୍ୟା ପସନ୍ଦ ହେଲେ ବିବାହତିଥି ଧାର୍ଯ୍ୟ ହୋଇଯାଏ । ଏହି ବିବାହରେ ବରପକ୍ଷକୁ ଶକ୍ତି ଅନୁସାରେ ଟଙ୍କା ଦେବାକୁ ପଡ଼େ ।

ବିବାହଦିନ ବର ଓ କନ୍ୟା ଉଭୟେ ହଳଦୀ ଲଗାନ୍ତି ଏବଂ ହଳଦିଆ ପାଞ୍ଚି ପିନ୍ଧନ୍ତି । କନ୍ୟାଘରେ ମଣ୍ଡପ ବା ଛାମୁଣ୍ଡିଆ ତିଆରି ହୁଏ । ବର ଘୋଡ଼ାରେ ଚଢ଼ି, ମୁଣ୍ଡରେ ପଗଡ଼ି ଓ ହାତରେ

ହଉଥାଏ ଧର ବରଯାତ୍ରୀଙ୍କ ଗହଣରେ ଖାଇ ହେବାକୁ ପାଏ । କନ୍ୟାଘର ନିକଟ ହୋଇଗଲେ ସେଠାର ବୃଦ୍ଧବୃଦ୍ଧାମାନେ ମାଟିରୁ ଉଠିନେବାକୁ ଧାଇଁ ଆସନ୍ତି । ସେମାନଙ୍କ ମଧ୍ୟରୁ ଜଣେ ପୁରୁଖା ବୁଢ଼ା ଲୋକ ବରକୁ କୋଳ କରି ନେଇଯାଏ । ସେତେବେଳେ କନ୍ୟାପକ୍ଷର ଲୋକେ ବରଯାତ୍ରୀମାନଙ୍କ ଦେହରେ ଆମ୍ବପତ୍ରପାଣି ସିଞ୍ଚି ଅଭ୍ୟର୍ଥନା କରନ୍ତି ।

ବିବାହ ସମୟରେ ବର ଓ କନ୍ୟା ପରସ୍ପରର କପାଳରେ ସିନ୍ଦୂର ଲଗାଇ ଦିଅନ୍ତି ଏବଂ ଶିଳପୁଆକୁ ପାଦରେ ଗଡ଼ାଇଦିଅନ୍ତି । ଏହିରୂପେ ବିବାହପର୍ବ ଶେଷ ହେବାପରେ ଭୋଜପର୍ବ ଆରମ୍ଭ ହୋଇଯାଏ । ମାଂସ, ମଦ, ବାଦ୍ୟ, ନୃତ୍ୟ, ଗୀତ କୌଣସିଟିର ଆୟୋଜନରେ ତ୍ରୁଟି ନ ଥାଏ । ବରର ଯେତେ ଶାଳୀ ଥାଆନ୍ତି, ସମସ୍ତେ ଆସି ବକ୍‌ସିସ ନେବାପାଇଁ ବର ଉପରେ ଚଢ଼ାଉ ଆରମ୍ଭ କରିଦିଅନ୍ତି । ବର ପ୍ରତ୍ୟେକ ଶାଳୀକୁ ଓ ଗ୍ରାମର ଆଖଡ଼ାଘରକୁ କିଛି କିଛି ଟଙ୍କା ଦିଏ । ପରଦିନ କନ୍ୟାଟି ଢୋଲବାଜଣରେ ସ୍ୱାମୀ ସହିତ ଶାଶୁଘରକୁ ଯାଏ । ସେଠାରେ ମଧ୍ୟ ବରପିତା ପ୍ରୀତିଭୋଜନର ବ୍ୟବସ୍ଥା କରିଥାଏ ।

ମନୋମାଳିନ୍ୟ ବା ସେପରି କୌଣସି ଗୁରୁତର ବିଭ୍ରାଟ ଘଟିଲେ ସ୍ୱାମୀ-ସ୍ତ୍ରୀର ବିବାହ-ବନ୍ଧନ ଛିଣ୍ଡିଯାଏ । ଏଥିରେ ସମାଜ ଆଦୌ ବାଧା ଦିଏ ନାହିଁ । କୌଣସି ସ୍ତ୍ରୀ ତା ଶାଶୁଘରକୁ ନ ଆସି ବାପଘରେ ବା ଅନ୍ୟ କେଉଁଠି ବେଶୀ କାଳ ରହିଲେ ସ୍ୱାମୀ ତାକୁ ବାଧ୍ୟ ହୋଇ ଛାଡ଼ପତ୍ର ଦେଇଥାଏ । ଏପରି ଘଟିଲେ ବରପକ୍ଷ କନ୍ୟାପକ୍ଷଠାରୁ ପଣଟଙ୍କା ଫେରସ୍ତ ପାଇବାକୁ ଦାବି କରେ ।

'ହୋ' ସମାଜ ପରି ଓରାଓଁ ସମାଜରେ ମଧ୍ୟ ବିଧବା ବିବାହ ପ୍ରଥା ଅନେକ କାଳରୁ ଚଳି ଆସୁଛି । ବଡ଼ଭାଇର ସ୍ତ୍ରୀ ବିଧବା

ହୋଇଗଲେ ଅବିବାହିତ ସାନଭାଇ ତାକୁ ବିଭା ହୁଏ । ଏଭଳି ବିବାହରେ ଦିଅରର ବୟସ ଭାଉଜର ବୟସଠାରୁ ଅଳ୍ପ ହେଲେସୁଦ୍ଧା ସେଥିରେ କୌଣସି ଦୋଷ ଧରାଯାଏ ନାହିଁ । ବିଧବାବିବାହକୁ ଓରାଓଁମାନେ 'ସଙ୍ଗା' କହନ୍ତି । ସଙ୍ଗାରେ ହଳଦୀ ଲଗାଇବା କିମ୍ବା ହଳଦିଆ ପାଞ୍ଚ ପିନ୍ଧିବାର ନିୟମ ନାହିଁ । ଏହି ଅନୁଷ୍ଠାନଟି ମଧ୍ୟ ଖୁବ୍ ସାଦାସିଧା ଭାବରେ କରିବାକୁ ହୁଏ । ଦିଅର ଛଡ଼ା ଅନ୍ୟ ଅବିବାହିତ ଯୁବକ ଯଦି ବିଧବା-ବିବାହ କରିବାକୁ ଇଚ୍ଛା କରେ ତେବେ ସେହି ବିବାହ ପୂର୍ବରୁ ତାକୁ ଗୋଟିଏ ଆମ୍ବଗଛ ସହିତ ବିବାହ ଦିଆଯାଏ । ଯୁବକଟି ସେହି ଗଛର ପତ୍ରଟିଏ ଚୋବେଇ ଫିଙ୍ଗିଦେବା ପରେ ପ୍ରସ୍ତାବିତା ବିଧବାକୁ ଆସି ବିବାହ କରେ ।

ଯୁବକ ପୁଅମାନଙ୍କୁ 'ଧାଙ୍ଗଡ଼ା' ଓ ଯୁବତୀ ଝିଅମାନଙ୍କୁ 'ଧାଙ୍ଗଡ଼ୀ' ବୋଲାଯାଏ । ଆଗେ ପ୍ରତି ଗାଆଁ ମୁଣ୍ଡରେ ଖୁବ୍ ଲମ୍ବା-ଚଉଡ଼ା ଦୁଇଟି କୋଠାଘର ଥିଲା । ତାହାର ନାମ 'ଧୁମ୍‌କୁଡ଼ିଆ' । ସେଥିରୁ ଗୋଟିକରେ ଗାଆଁର ଧାଙ୍ଗଡ଼ାମାନେ ଓ ଆରଟିରେ ଧାଙ୍ଗଡ଼ୀମାନେ ରାତିରେ ଶୋଉଥିଲେ । ଶ୍ରେଣୀର ବରିଷ୍ଠ ପରି ଧାଙ୍ଗଡ଼ା ଦଳର ଚାଳକକୁ 'ଧାଙ୍ଗଡ଼ା ମହାତୋ' ଏବଂ ଧାଙ୍ଗଡ଼ୀ ଦଳର ଚାଳିକାକୁ 'ଧାଙ୍ଗଡ଼ୀ ମହାତୋ' କୁହାଯାଉଥିଲା । ଯେଉଁମାନଙ୍କର ବୟସ ଅଧିକ, ସେମାନେ ସାନମାନଙ୍କୁ ଅନେକ କାମ ବରାଦ କରୁଥିଲେ । ସାନମାନେ ବଡ଼ଙ୍କ ପାଇଁ କାଠ ସଂଗ୍ରହ କରି ଆଣୁଥିଲେ । ବଡ଼ଙ୍କ ଗୋଡ଼ହାତ ଘଷିଦେଉଥିଲେ । ବେଳବେଳେ ଧାଙ୍ଗଡ଼ା-ଧାଙ୍ଗଡ଼ୀ ଏକାଠି ମିଶି ନାଚୁଥିଲେ, ଗାଉଥିଲେ, ବଜାଉଥିଲେ । ଏହିରୂପେ ସେମାନଙ୍କ ମଧ୍ୟରେ ସ୍ୱଚ୍ଛନ୍ଦ ମିଳାମିଶାର ସୁବିଧା ଥିଲା । ଆଜିକାଲି ଏଭଳି ପ୍ରଥା ଆଉ ନାହିଁ ।

ଓରାଓଁମାନେ ନିଜ ନିଜର ସୁଖସୁବିଧା ପାଇଁ ଛୋଟନାଗପୁର ଅଞ୍ଚଳରେ ଗୋଟିଏ ଗୋଟିଏ ସୀମା ଠିକ କରିଦେଇଥାନ୍ତି । ସେହି ସୀମାମଧ୍ୟରେ ଯେତେ ଗ୍ରାମ ଥାଏ, ସେଗୁଡ଼ିକ ଖୁବ୍ ଏକମେଳ ହୋଇ ଚଳନ୍ତି । ଏହାର ଫଳରେ କୌଣସି ଗ୍ରାମ ଉପରେ ବିପଦଆପଦ ପଡ଼ିଲେ ଅନ୍ୟାନ୍ୟ ଗ୍ରାମର ଲୋକେ ଗୁଏଁ ଗୁଏଁ ଆସି ସାହାଯ୍ୟ କରନ୍ତି । ଦରକାର ପଡ଼ିଲେ ଜୀବନକୁ ପାଣି ଛଡ଼ାଇଦେବା ପାଇଁ ମଧ୍ୟ ସେମାନେ ପଛଘୁଞ୍ଚା ଦିଅନ୍ତି ନାହିଁ ।

ଏକ ଗ୍ରାମରେ ଆମୋଦଉତ୍ସବ ବା ଯାତ୍ରାପର୍ବ ହେଲେ ସେହି ସୀମାମଧ୍ୟରେ ଥିବା ସମସ୍ତ ଗ୍ରାମର ମୁଖିଆ ମୁଖିଆ ଲୋକଙ୍କୁ ନିମନ୍ତ୍ରଣ କରାଯାଏ । ସେମାନଙ୍କ ସହିତ ସେହି ସେହି ଗ୍ରାମର ଧାଙ୍ଗଡ଼ା-ଧାଙ୍ଗଡ଼ୀ ମଧ୍ୟ ଆସନ୍ତି । ହଜାର ହଜାର ଓରାଓଁ ଏ-ଭଳି ଜମା ହେବାରୁ ଗ୍ରାମଟି ଆନନ୍ଦ କୋଳାହଳରେ ଉଚ୍ଛୁଳି ଉଠେ । ପାଖାପାଖି ଯୁବକ-ଯୁବତୀମାନେ ଢୋଲ, ମାଦଳ ବଜାଇ ଓ ବିଭିନ୍ନ ରଙ୍ଗର ପତାକା ଉଡ଼ାଇ ନୃତ୍ୟଗୀତରେ ମାତିଯାନ୍ତି । ବଡ଼ ବଡ଼ ଉତ୍ସବରେ ଅନ୍ୟ ସୀମାରେ ଥିବା ଗ୍ରାମବାସୀ ଓ ଧାଙ୍ଗଡ଼ା-ଧାଙ୍ଗଡ଼ୀମାନଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଏ । ସେମାନେ ଆସି ଏମାନଙ୍କ ସହିତ ଉତ୍ସବରେ ଯୋଗ ଦିଅନ୍ତି ।

କ୍ଷେତରୁ ଫସଲ ଉଠିବା ଅମଳ ହୋଇସିବାପରେ ଗ୍ରାମବାସୀ-ମାନଙ୍କ ଜୀବନରେ କିଛି ସମୟ ପାଇଁ ବିଶ୍ରାମ ଆସେ । ସେମାନଙ୍କ ମନର ସରସତା ବଢ଼ାଇବାଲାଗି ଗ୍ରାମର ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ନୃତ୍ୟଗୀତର ଆୟୋଜନ କରନ୍ତି । ଆଖଡ଼ାଘର ହେଉଛି ଏଭଳି ଆମୋଦର ଏକମାତ୍ର ଜାଗା । ସେଠାରେ କି ରାତି କି ଦିନ ସବୁବେଳେ ନାଚଗୀତର ସୁଅ ଛୁଟେ । ଜୋନ୍ହରାତିରେ ଯୁବକ-ଯୁବତୀମାନେ ପରସ୍ପରର ଅଣ୍ଟା ଧରି ଗୋଲ ହୋଇ ନାଚନ୍ତି,

କେତେବେଳେ ଅବା ସମସ୍ତେ ଏକାଠି ସ୍ୱର ମିଳାଇ ଗାଆନ୍ତି ଓ ଢୋଲ, ମାଦଳ ବଜାନ୍ତି ।

ବର୍ଷର ବିଭିନ୍ନ ସମୟରେ ଓରାଓଁମାନଙ୍କ ଗ୍ରାମରେ ନାନା ପର୍ବ ଅନୁଷ୍ଠିତ ହୁଏ । ସବୁ ପର୍ବମଧ୍ୟରେ 'ସରହୁଲ' ପର୍ବ ଶ୍ରେଷ୍ଠ । ପ୍ରତ୍ୟେକ ଗ୍ରାମରେ ଗୋଟିଏ ଲେଖାଏଁ ଆମ୍ବକୁଞ୍ଜ ଥାଏ । ଏହାର ନାମ 'ସରନା' ଏବଂ ଏହାହିଁ ହେଉଛି ଓରାଓଁମାନଙ୍କର ସର୍ବସାଧାରଣ ପୂଜାପୀଠ । ସାରହୁଲ ପର୍ବରେ ଏହି ସରନାଠାରେ ପୂଜା ହୁଏ ଓ ନାନାପ୍ରକାର ବଳି ପଡ଼େ ।

ଏହାଛଡ଼ା 'କରମା' ପର୍ବ ଆଉ ଗୋଟିଏ ପ୍ରଧାନ ପର୍ବ । ଗ୍ରାମର ବାଳକବାଳିକାମାନେ ଆଖଡ଼ାଘରେ କରମା ଗଛକୁ ପୂଜା କରନ୍ତି ଏବଂ ସେଠାରେ ବୁଢ଼ାବୁଢ଼ୀଙ୍କଠାରୁ ପୁରୁଣା କାଳର କେତେ ବଚନ କାହାଣୀ ଶୁଣନ୍ତି । ପୂଜା ଶେଷରେ ଝିଅମାନେ ଗୋଟିଏ ଗୋଟିଏ କରମାଡାଳ ମୁଣ୍ଡରେ ରଖନ୍ତି ଏବଂ ପୁଅମାନେ ତାଙ୍କ ସଙ୍ଗରେ ରହି ବାଜା ବଜାନ୍ତି । ତାପରେ ସମସ୍ତେ ମିଳି ନିକଟରେ ଥିବା ନଦୀକୁ ଯାଆନ୍ତି ଏବଂ ସେହି କରମାଡାଳଗୁଡ଼ିକୁ ତାହାର ଜଳରେ ବିସର୍ଜନ ଦିଅନ୍ତି । ଏହି ପୂଜା କଲେ 'କରମ'ବା ଭାଗ୍ୟ ଭଲ ହୁଏ ବୋଲି ଓରାଓଁମାନେ ଭାବନ୍ତି । ଏ ଦୁଇଟି ପ୍ରଧାନ ପର୍ବ ଛଡ଼ା ଯେଉଁଠି ବଡ଼ ଆହୁରି କେତେ ପର୍ବ ଅଛି ।

ଆମ୍ବକୁଞ୍ଜ ବା ସରନାରେ 'ସରନାବୁଢ଼ିଆ' ଦେବୀ ଥାଆନ୍ତି । ଦେବୀ ଗୌରବର୍ଣ୍ଣ ଏବଂ ତାଙ୍କର କେଶ କାଶଫୁଲ ଦାଣ୍ଡ ପରି ଶ୍ୱେତ । ଶରତଋତୁର ନିର୍ମଳ ଚନ୍ଦ୍ରକିରଣରେ ସାରା ଜଗତ ହସିଉଠିଥିବାବେଳେ ଗ୍ରାମବାସୀମାନେ ସରନାବୁଢ଼ିଆଙ୍କୁ ଗ୍ରାମର ଅଢ଼କଢ଼ ବୁଲନ୍ତି । ଅତି ଭକ୍ତିରେ ତାଙ୍କୁ ପୂଜାଦ୍ୱାରା ସନ୍ତୁଷ୍ଟ କରିବାକୁ ସମସ୍ତେ ଚେଷ୍ଟା କରନ୍ତି । ଓରାଓଁମାନଙ୍କର ଧାରଣା, ଏହି ଦେବୀ

ପ୍ରସନ୍ନ ହେଲେ ଗ୍ରାମରେ କୌଣସି ବିପତ୍ତି ଘଟେ ନାହିଁ । ଓରାଓଁ-ମାନଙ୍କର ଶିକାରଦେବୀ ହେଉଛନ୍ତି 'ଚଣ୍ଡୀ' । ଏହି ଦେବୀଙ୍କ ପୂଜା ନ ଦେଇ ଓରାଓଁ ନରନାରୀ କେବେହେଲେ ଶିକାରପାଇଁ ଯାତ୍ରା କରନ୍ତି ନାହିଁ । ଏ ଦୁଇ ଦେବୀଙ୍କ ବ୍ୟତୀତ 'ସୂର୍ଯ୍ୟନାରାୟଣ', 'ଧରମେଶ' ଓ 'ଭଗବତୀ' ପ୍ରଭୃତି ଅନେକ ଦେବଦେବୀଙ୍କୁ ସେମାନେ ପୂଜା କରନ୍ତି ।

ଓରାଓଁମାନେ 'ମହାଦାନଆ' ନାମକ ଏକ ଅପଦେବତାଙ୍କୁ ମଧ୍ୟ ପୂଜା କରନ୍ତି । ଏହି ନାମଟି 'ମହାଦାନବ' ଶବ୍ଦରୁ ଆସିଛି ବୋଲି ମନେ ହୁଏ । ସେମାନଙ୍କର ବିଶ୍ୱାସ, ଏହି ଭୀଷଣ ଅପଦେବତା ସର୍ବଦା ରକ୍ତମୁଖା । ରକ୍ତ ବ୍ୟତୀତ ଅନ୍ୟ କୌଣସି ଦ୍ରବ୍ୟରେ ତାଙ୍କର ତୃପ୍ତି ଆସେ ନାହିଁ । ସେଥିପାଇଁ ଓରାଓଁମାନେ ଜ୍ୟେଷ୍ଠମାସ କୃଷ୍ଣ ଚତୁର୍ଦ୍ଦଶୀ ତିଥିର ଅନ୍ଧକାରମୟ ନିର୍ଜନ ସନ୍ଧ୍ୟାରେ ଜଣେ ମନୁଷ୍ୟକୁ ଧରିଆଣି ମହାଦାନଆଙ୍କ ନିକଟରେ ବଳି ପକାନ୍ତି । ଏହି ଅପଦେବତା ତୃପ୍ତ ହେଲେ ଅନାବୃଷ୍ଟି, ଦୁର୍ଭିକ୍ଷ ଓ ମହାମାରୀ ହେବ ନାହିଁ ବୋଲି ପୂର୍ବେ ସେମାନଙ୍କର ଦୃଢ଼ ଧାରଣା ଥିଲା । କାଳକ୍ରମେ ଓରାଓଁମାନଙ୍କର ଏହି ପ୍ରଥାରେ ପରିବର୍ତ୍ତନ ଆସିଛି । ସେମାନେ ନରବଳି ବଦଳରେ ଏବେ ଅନ୍ୟାନ୍ୟ ଜୀବ ବଳି ଦେଉଛନ୍ତି ।

ଭୂତ-ପ୍ରେତ, ଡାଆଣୀ-ଚିରଗୁଣୀରେ ଏହି ଆଦିବାସୀ ସମାଜର ଘୋର ବିଶ୍ୱାସ । ସେମାନଙ୍କ ନାମ ପଡ଼ିଲେ ଓରାଓଁମାନେ ଭୟରେ ଥରହର ହୋଇଯାନ୍ତି । କୌଣସି ନାରୀ ଗର୍ଭବତୀ ଅବସ୍ଥାରେ ମରିଗଲେ ଏକପ୍ରକାର ଭୂତ ପାଲଟିଯାଇ ଗ୍ରାମର ବହୁତ କ୍ଷତି କରେ ବୋଲି ସେମାନେ ବହୁ କାଳରୁ ଶୁଣି ଆସିଛନ୍ତି । ଏଥିପାଇଁ ଗର୍ଭିଣୀଟିଏ ମରିଗଲେ ସେମାନେ ତାହାର ହାତଗୋଡ଼

ଘଷି ଦିଅନ୍ତି ଏବଂ ଦୁଇ ଆଖିପତାକୁ ନାଗଫେଣୀ କଣ୍ଟାରେ ଫୋଡ଼ି ଏକାବେଳକେ ବନ୍ଦ କରିଦିଅନ୍ତି । ତାପରେ [illegible] ନେଇ ଗ୍ରାମଠାରୁ ଅନେକ ଦୂରରେ ପୋତିଦେଇ ଆସନ୍ତି । ଏପରି କଲେ ସେହି ଭୂତ ଗ୍ରାମକୁ ଆସିବାପାଇଁ ବାଟ ପାଇପାରିବ ନାହିଁ ବୋଲି ସେମାନେ ଭାବନ୍ତି ।

ଶିଶୁମାନେ ମରିଗଲେ ଆଉ ଏକପ୍ରକାର ଭୂତ ହୁଅନ୍ତି । ଏପ୍ରକାର ଭୂତ ରାତିଅଧ ସମୟରେ ମାତୃସ୍ତନ୍ୟ ଖାଇବା ପାଇଁ କରୁଣ ସ୍ୱରରେ କାନ୍ଦି ବୁଲୁଥାଏ ଏବଂ କୌଣସି ଲୋକକୁ ଏକାକୀ ଯାଉଥିବାର ଦେଖିଲେ ତାହାର ଦୁଇ ଗୋଡ଼ ଜାବୁଡ଼ିଧରି ତାକୁ ଭୟ ଦେଖାଏ ।

ଡାଆଣୀଙ୍କ ଯୋଗୁଁ ରୋଗବ୍ୟାଧି ହୁଏ, ଗାଈବାଛୁରୀ ମରି-ଯାନ୍ତି, ଫସଲହାନି ଘଟେ, ସୁସ୍ଥ ସବଳ ଶିଶୁମାନେ ନ ଖାଇ ନ ପିଇ ଶୁଖି ଶୁଖି ଡାଙ୍ଗ ପରି ହୋଇଯାନ୍ତି । ଚିରଗୁଣୀମାନେ ମଣିଷକୁ ମାରିପକାଇ ସେମାନଙ୍କ ଆତ୍ମାକୁ ଗଛଡାଳରେ ବାନ୍ଧିଦିଅନ୍ତି । ଏହିପରି କେତେ କଣ ବିଶ୍ୱାସ ଓରାଓଁମାନଙ୍କର ଅଛି ।

ଏହି ଭୂତ-ପ୍ରେତ, ଡାଆଣୀ-ଚିରଗୁଣୀଙ୍କୁ ଶାନ୍ତ କରିବା ପାଇଁ ଓରାଓଁ ସମାଜରେ ଏକପ୍ରକାର ଗୁଣିଆ ଅଛନ୍ତି । ସେମାନଙ୍କୁ 'ପାହାଣ' ବୋଲିଯାଏ । ପାହାଣମାନେ ମନ୍ତ୍ର ପଢ଼ି ପୂଜା କରନ୍ତି, ଭୂତ-ପ୍ରେତ ଆଦିଙ୍କୁ କୁକୁଡ଼ା ବଳି ଦିଅନ୍ତି ଓ କୁକୁଡ଼ାଅଣ୍ଡା ଉତ୍ସର୍ଗ କରନ୍ତି । ଗୋରୁମଲଂଷିଙ୍କ ମଡ଼କ ପଡ଼ିଲେ ସେମାନେ କୁକୁଡ଼ାଛୁଆକୁ ମନ୍ତ୍ର କରି ଗ୍ରାମସୀମା ପାର କରିଦେଇଆସନ୍ତି । ଏହା ଦ୍ୱାରା ଗ୍ରାମର ସବୁ ରୋଗବ୍ୟାଧି ସେହି କୁକୁଡ଼ାଛୁଆ-ଦେହରେ ଚାଲିଯାଏ ବୋଲି ସେମାନେ ଓରାଓଁମାନଙ୍କୁ କହନ୍ତି । ଶିଶୁକୁ ଡାଆଣୀ ଖାଇଲେ ବା

ସ୍ତ୍ରୀଲୋକମାନଙ୍କୁ ଭୂତ ମାଡ଼ିବସିଲେ ଏହି ପାହାଣମାନେ ମନ୍ତ୍ର ପଢ଼ି ଝାଡ଼ିଦିଅନ୍ତି । ସେଥିରେ ଡାଆଣୀ ଓ ଭୂତ ଗୁଡ଼ ପଳାନ୍ତି ।

ପ୍ରତ୍ୟେକ ଗ୍ରାମ ପାଇଁ ଜଣେ ପାହାଣ ବଚ୍ଛାଯାଏ । ସେ ତିନ ବର୍ଷପର୍ଯ୍ୟନ୍ତ ସେହି ଗ୍ରାମର ପୂଜା ଆଦି କାର୍ଯ୍ୟ କରେ । ତିନ ବର୍ଷପରେ ପୁଣି ପାହାନ ବଚ୍ଛା ହୁଏ । ଏହି ବଚ୍ଛାର ପ୍ରଣାଳୀ ବଡ଼ କୌତୂହଳପୂର୍ଣ୍ଣ । 'ସରନାବୁଢ଼ିଆ' ଦେବୀଙ୍କ ପୀଠରେ ଗୋଟିଏ କୁଲ ରହିଥାଏ । ତାହାର ନାମ 'ସରନାସୂପ' । ବୋଲିବା ବାହୁଲ୍ୟ ଯେ, 'ସୂପ' ଶବ୍ଦଟି 'କୁଲ' ଅର୍ଥ ପ୍ରକାଶ କରୁଥିବା ସଂସ୍କୃତ 'ସୂର୍ପ' ଶବ୍ଦରୁ ଆସିଛି । ପାହାଣବଚ୍ଛା ଦିନ ସେହି କୁଲଟିକୁ ଗୋଟିଏ ବାଉଁଶଅଗରେ ବାନ୍ଧିଦିଆଯାଏ ଏବଂ କୁଲ ଉପରେ ଏକ ବଡ଼ ଶିଳପଥର ରଖାଯାଏ । ଜଣେ ଲୋକର ଦୁଇ ଆଖିରେ କନାର ଅନ୍ଧପଟି ବାନ୍ଧିଦିଆଯାଏ । ସେହି ଲୋକଟି ଉକ୍ତ ବାଉଁଶ ଧରି ରହେ । ଶିଳପଥର ଭାରରେ କୁଲଟି ଯେଉଁ ଆଡ଼କୁ ଅଣେଇ ହୋଇଯାଏ, ଲୋକଟି ସେହି ଦିଗକୁ ଯିବାକୁ ଲାଗେ । ଏହିରୂପେ ଯାଇ ଲୋକଟି ଯେଉଁ ଘରେ ପହଞ୍ଚେ, ସେହି ଘରର ମାଲିକ ନୂତନ 'ପାହାଣ'ରୂପେ ବଚ୍ଛାଯାଏ । ଏହା ସରନାବୁଢ଼ିଆଙ୍କ ଆଦେଶରେ ହୋଇଥାଏ ବୋଲି ଧାମସ୍ତେ ମନେ କରନ୍ତି ।

ପୂର୍ବେ ଓରାଓ ମାନେ ଶବକୁ ମାଟି ଭିତରେ ପୋତିପକାଉଥିଲେ । 'ହାଡ଼ବୋର' ପର୍ବଦିନ ମାଟି ଭିତରୁ ଶବର ହାଡ଼ ବାହାର କରିଆଣି ତାହାକୁ ସେମାନେ ଜଳନ୍ତା ଚିତାରେ ପକାଇଦେଉଥିଲେ । ଏବେ ଏହି ପ୍ରଥା ବଦଳିଯାଇ ଶବଗୁଡ଼ିକୁ ମଶାଣିରେ ଦାହ କରାଯାଉଛି । ଚିତା ସଜା ହୋଇ ତହିଁରେ ଶବଟିର ମୁଣ୍ଡ ପୂର୍ବ ଦିଗକୁ ରଖାଯାଏ । ବଡ଼ପୁଅ ଶବକୁ ମୁଖାଗ୍ନି ଦିଏ ।

ତା' ଆରଦିନ ଚିତା ମଧ୍ୟରୁ ଅସ୍ଥି ସଂଗ୍ରହ କରାଯାଏ ଏବଂ ତାହା ଗୋଟିଏ ଘଣ୍ଡରେ ପଶି 'କୁଣ୍ଡୀ' ପାଟକୁ ନିଆଯାଏ। କୁଣ୍ଡୀ ହେଉଛି ଖଣ୍ଡେ ପ୍ରକାଣ୍ଡ ଶିଳା। ଲୋକେ କହନ୍ତି, ଏହି କୁଣ୍ଡୀତଳେ ଗ୍ରାମର ସମସ୍ତ ମୃତ ବ୍ୟକ୍ତିଙ୍କର ଆତ୍ମା ରହିଥାନ୍ତି। ମହାମାଘବେଳେ ସେହି ଆତ୍ମାସବୁ କୁଣ୍ଡୀତଳୁ ବାହାରିଆସନ୍ତି। ତାପରେ ସେମାନେ ଏକାଠି ବସି ଗ୍ରାମର ଭଲ-ମନ୍ଦ କଥା ଆଲୋଚନା କରନ୍ତି ଏବଂ ନିଜ ଗୋଷ୍ଠୀଲୋକଙ୍କ ମଙ୍ଗଳପାଇଁ ଆଶୀର୍ବାଦ ଦିଅନ୍ତି।

ବିଦେଶୀ ଇଂରେଜମାନେ ଭାରତର ସର୍ବେସର୍ବା ହେଲା ପରେ ଓରାଓଁମାନଙ୍କ ଧର୍ମ ଉପରେ ଆଘାତ ଆସିଲା। ପାଦ୍ରିମାନେ ଦଳଦଳ ହୋଇ ସେମାନଙ୍କୁ ଖ୍ରୀଷ୍ଟିୟାନ୍ ହେବାପାଇଁ ପ୍ରବର୍ତ୍ତାଇଲେ। ଅନେକ ଓରାଓଁ ପାଦ୍ରିମାନଙ୍କ କଥାରେ ଭୁଲି ଖ୍ରୀଷ୍ଟିୟାନ୍ ମଧ୍ୟ ହୋଇଗଲେ।

ଏହାର ଫଳରେ ଓରାଓଁ ସମାଜରେ ବିପ୍ଳବ ଦେଖା ଦେଲା। ସେମାନେ ନିଜ ଧର୍ମମତକୁ କଳୁଷିତ ନ କରିବା ପାଇଁ ଆନ୍ଦୋଳନ ଆରମ୍ଭ କରିଦେଲେ। ତାହାର ନାମ ହେଲା 'ଭକତ ଆନ୍ଦୋଳନ'। ସେମାନଙ୍କ 'କୁରୁଖ' ଧର୍ମମତକୁ ଆହୁରି ବିଖ୍ୟାତ କରିବା ଏହି ଆନ୍ଦୋଳନର ଏକମାତ୍ର ଉଦ୍ଦେଶ୍ୟ ହେଲା।

ବିପ୍ଳବୀମାନେ ଗ୍ରାମଆଡ଼େ ପ୍ରଚାର କରି କହି ବୁଲିଲେ, "ଏଇ ବିଧର୍ମୀ ଫିରିଙ୍ଗିମାନେ ନାନାପ୍ରକାର ଭୂତ ଆଣି ଆମ ମାତୃଭୂମିରେ ଛାଡ଼ିଛନ୍ତି। ସେହି ଭୂତମାନଙ୍କୁ ପୋଡ଼ିଜାଳି ମାରି ନ ଦେଲେ ଆମ ଦେଶରେ ଶାନ୍ତି ନାହିଁ କି ମୁକ୍ତି ନାହିଁ।" ଏହା କହି ସେମାନେ ସହର, ଗ୍ରାମ, ବଜାରର ଯେଉଁସବୁ ଦ୍ରବ୍ୟରେ ଭୂତ ଅଛି ବୋଲି ଭାବିଲେ, ସେଗୁଡ଼ିକୁ ନିଆଁ ଲଗାଇ ପୋଡ଼ିଦେଲେ।

କିଛି କାଳ ପରେ ପରେ ଓରାଓଁ ସମାଜସେବା ଓ ଧର୍ମ-ପ୍ରଚାରକମାନେ ବାହାରି ପଡ଼ିଲେ । ସେମାନେ ମଦ, ମାଂସ, ମାଛ ପ୍ରଭୃତି ଖାଇବା ପିଇବା ଛାଡ଼ିଲେ ଏବଂ ନିଜକୁ 'ଭକତ' ନାମରେ ପରିଚିତ କରି ସଦାଚାର ଧର୍ମଭାବରେ ଗଢ଼ିଲେ । ସେମାନଙ୍କ ଉଦ୍ୟମରୁ ଓରାଓଁ ସମାଜରେ ସଂସ୍କାର ପରିବର୍ତ୍ତନ ଆସିଲା । ସେମାନଙ୍କ ମଧ୍ୟରୁ ଅନେକ ଅନ୍ଧବିଶ୍ୱାସ ଦୂର ହୋଇଅଛି । ଏବେ ସାଂସ୍କୃତିକ ଧର୍ମକାର୍ଯ୍ୟ ଓ ଦେବପୂଜାରେ ଏହି 'ଭକତ'ମାନଙ୍କୁ ନିଯୁକ୍ତ କରାଯାଉଛି ।

## ପ୍ରଶ୍ନ

୧ । ଓରାଓଁମାନଙ୍କ ଘର ଓ ସାଜସରଞ୍ଜାମ ବିଷୟରେ ଯାହା ଜାଣିଲ, କହ ।

୨ । ଓରାଓଁ ଘରଣୀମାନେ କିପରି ଚୂନାମାଛ ଧରନ୍ତି ?

୩ । 'କରମା ପୂଜା' ବିଷୟ ସଂକ୍ଷେପରେ ବର୍ଣ୍ଣନ କର ।

୪ । ଖଡ଼ିନ, ବୈଗା, ଧାଙ୍ଗଡ଼ା, ଧାଙ୍ଗଡ଼ୀ, ସଙ୍ଗୀ, ସରନା, କୁଣ୍ଡୀ —ଏଗୁଡ଼ିକ କଣ ?

୫ । 'ଭକତ ଆନ୍ଦୋଳନ' କାହିଁକି ହୋଇଥିଲା ? ତାହାର ଫଳ କଣ ହେଲା ?



